# ଜଣା ଅଜଣା ପଶୁପକ୍ଷୀ



କେନାମଣି ଲକ୍ଷ୍ମୀକାନ୍ତ

# ଜଣା ଅଜଣା ପଶୁପକ୍ଷୀ

ଲେଖକ :

**ଜେନାମଣି ଲକ୍ଷ୍ମୀକାନ୍ତ**

କବିଷରଙ୍ଗ, କଳ୍ପନାଞ୍ଚଳ

ଭୁବନେଶ୍ୱର-୭



ପ୍ରଚ୍ଛଦ :

**ଆର୍ଟଓ୍ୱେଭ, ବି-୨୩**

ଶହୀଦନଗର, ଭୁବନେଶ୍ୱର-୭

ପ୍ରକାଶକ :

**ସରସ୍ୱତୀ ପ୍ରକାଶନ**

ଦଜାସାଲେନ୍

କଟକ-୭୫୩୦୦୯

ମୁଦ୍ରଣ :

**ସୁକାନ୍ତ ପ୍ରିଣ୍ଟର୍ସ**

ମାନସିଂହପାଟଣା, କଟକ-୮

ପ୍ରଥମ ପ୍ରକାଶ :

**ଏପ୍ରିଲ ୧, ୧୯୮୯ ( ଉତ୍କଳ ଦିବସ )**

ମୂଲ୍ୟ : **ସାତ ଟଙ୍କା**

# ସୂଚୀ





# ଘଡ଼ିଆଳ କୁମ୍ଭୀର

ଯେକାଳ ପଖାଳ ଆଉ ନାହିଁ । ଦିନ ଥିଲା ଯେତେବେଳେ ଓଡ଼ିଶାର ମହାନଦୀ, ବ୍ରାହ୍ମଣୀ, ବୈତରଣୀ ଆଦି ନଈକୂଳିଆ ଗାଁଆ ଲୋକଙ୍କର କୁମ୍ଭୀର ଭୟ କୋକୁଆ ଭୟଠୁଁ ବେଶିଥିଲା । ଗାଁ ମାଇପେ କଳିଲାଗିଲେ 'ତୋତେ କୁମ୍ଭୀର ଖାଉ' ବୋଲି ଛଟା ଗାଉଥିଲେ । ଏବେବି ଅମ ଗାଁଆ ଗହଳରେ କୁମ୍ଭୀରକୁ ନେଇ ବିରଳ ଲୋକଗୀତଟିଏ ବଞ୍ଚି ରହିଛି ଜନମୁଖରେ—

"ନଈକି ଫିଙ୍ଗିଲି ଗିଲ,
ନଈ ପାଣି ତଳେ ଘଡ଼ିଆଳ ଥିଲା ବୁଢ଼ୀକି ଝିଂକିଲା ଟିଲ..."

ସାପ କଇଁଛଙ୍କ ଭଳି କୁମ୍ଭୀର ମଧ୍ୟ ଏକ ସରୀସୃପ ଜାତୀୟ ପ୍ରାଣୀ । କୁମ୍ଭୀର ନାନା ଜାତିର ଓ ଏବେ ବିଶ୍ୱରେ ଥିବା କୁମ୍ଭୀର ଗାଏମୋଟ ବାଇଶିଟି ଜାତିର ବୋଲି ଜାତିସଂଘ ବିକାଶ ଯୋଜନାର ତନଖିରୁ ଜଣାଯାଏ । ଦେଶକେ ଫାଙ୍କ; ନଈକେ ବାଙ୍କ । ଦକ୍ଷିଣ ଆମେରିକା ଓ ଚୀନର ୟାଙ୍ଗିଜେ ନଦୀ ଉପତ୍ୟକାରେ 'କେକନ୍' ଜାତୀୟ ଏକ ବିରଳ କୁମ୍ଭୀର ଦେଖାଯାନ୍ତି । ଆମ ଦେଶର ଗଙ୍ଗା, ବ୍ରହ୍ମପୁତ୍ର, ସିନ୍ଧୁ, କୋଶୀ ଓ ଗଣ୍ଡକ ଭଳି ବଡ ବଡ କାଦୁଆ ନଈରେ 'କାଦୁଆ କୁମ୍ଭୀର' ଦେଖାଯାଉଥିବା ବେଳେ 'ମଗର ଓ ଘଡିଆଳ' ଜାତୀୟ କୁମ୍ଭୀର ପଶ୍ଚିମବଙ୍ଗ ଓ ଓଡ଼ିଶାର ମାତ୍ର କେତେକ ନଦୀରେ ଥାଆନ୍ତି ।

ଭାରତୀୟ କୁମ୍ଭୀର ମୁଖ୍ୟତଃ ଦୁଇ ଜାତିର; ଯଥା—'ମଗର' ଓ 'ଘଡ଼ିଆଳ' । 'ମଗର' ଜାତୀୟ କୁମ୍ଭୀର ଅପେକ୍ଷାକୃତ ଦୁର୍ଦ୍ଦାନ୍ତ । ତାର ଲାଞ୍ଜ ବଡ଼, ଶକ୍ତିଶାଳୀ କରତଆର ଭଳି । ଗୋଟାଏ ପିଟାରେ ସେ ହୁଳଡଙ୍ଗାକୁ ବୁଡ଼ାଇ ଦେବାରେ ପାରଙ୍ଗମ ।



ମଗର ପହଁରିଲା ବେଳେ ଲାଞ୍ଜ ଚହଲାଏ ଓ ଆନ୍ଦୋଳାଏ । ଦରକାର ବେଳେ ଏତେଶୀଘ୍ର ପହଁରିଯାଏ ଯେ ତାର ପିଛା ଧରିବା କାଠିକର ପାଠ; ଅଥଚ ଶିକାର ବେଳେ ଟିକିଏ ହେଲେ ପାଣି ନ ଚହଲାଇ କିମ୍ବା ଚବ୍ ଚବ୍ ନକରି ନିଃଶବ୍ଦରେ ଛପି ଛପି ମଉକା ଉଣ୍ଡି ଶିକାରକୁ ଆକ୍ରମଣ କରି ଲାଞ୍ଜରେ ପିଟି ଘାଇଲା କରିବା ସଂଗେ ସଂଗେ ନିଜ ମୁହଁ ରେ ଚୁପି ପାଣି ଭିତରକୁ ଝପଟିଯାଏ ପିଚ୍ଛଡ଼ାକେ । ଘଡ଼ିଆଳ କୁମ୍ଭୀର ସାଧାରଣତଃ ଏତେ କ୍ଷତି କାରକ ନୁହନ୍ତି ଏବଂ ସ୍ୱଭାବତଃ ଲାଜକୁଳା । ମାଛ ଖାଇ ସେମାନେ ବଞ୍ଚନ୍ତି । ଘଡ଼ିଆଳର ଜୀବନକାଳ ପ୍ରାୟ ପଚିଶ ବର୍ଷ । ତାଙ୍କ ଗୃହଚଳଣି ଖୁବ୍ ଥଣ୍ଡା ମିଜାଜର । ଦେହ ଚାରିପାଖର ଉତ୍ତାପ ସାଧାରଣତଃ ଶୀତୁଆ ପବନଠାରୁ ଅଧିକ ଉଷ୍ମ ମଧ୍ୟ ନୁହେଁ । ବୋଧହୁଏ ସେଇଥିପାଇଁ ମାଈ ଘଡ଼ିଆଳ କୁମ୍ଭୀର ଆଉ କୁମ୍ଭୀରଙ୍କ ଭଳି ଅଣ୍ଡା ଉପରେ ବସି ଭୁଛାଠାରେ ଅଣ୍ଡା ଉଷୁମାଏ ନାହିଁ । ନଦୀପଠ ଠାଆ ଠଉରେଇ ବାଲି ଖୋଳି ଅଣ୍ଡା ଦେଲା-ପରେ ତାକୁ ଘୋଡେଇ ଦେଇଥାଏ ମଟିରେ ମଟିରେଚଦେବା ଦିଏ । ଅଣ୍ଡା ଫୁଟି ଛୁଆ ବାହାରେ ପ୍ରାୟ ଧରୁଣି ଦିନ ଭିତରେ । ତା'ପରେ କୁନି ଘଡ଼ିଆଳ

ବାପା ମାଆଙ୍କ ହେପାଜତରେ ପାଣିରେ ପହଁରା ଓ ଚଲାଫେରା କରେ । ଶିକାର ତରିକା ଶିଖେ ।

ବଣ୍ୟ ଖାଦ୍ୟ ଓ କୃଷି ସଂସ୍ଥାର ଲୁଣିପାଣିଆ (ଘଡ଼ିଆଳ ଜାତୀୟ) କୁମ୍ଭୀରଙ୍କ ଗୃହଚଳନ ଅନୁଶୀଳନରୁ ଜଣାଯାଏ ଯେ—ଆଉସବୁ କୁମ୍ଭୀରଙ୍କ ଠାରୁ ଘଡ଼ିଆଳର ଦାନ୍ତ ବଡ଼ ଅଜବ । ଗିଳିବାରେ ଯେପରି ଧୁରନ୍ଧର, ଗେଲବାଇବାରେ ତାକୁ 'କେହି ଝପିବା କଠିଣ । କୌଣସି ଶିକାରପାଇଁ ଆଁ କରି ତାକେଇବା ବେଳେ ଘଡ଼ିଆଳ ତାର ସ୍ୱତନ୍ତ୍ର 'ଦାନ୍ତମୁଣିଥାବା'ରେ ପାଟି ଭିତରକୁ ପାଣି ପଶିବା ଅଟକାଏ । ମଝିରେ ମୁଣ୍ଡ ଉପରକୁ ଉଠାଏ । ଘଡ଼ିଆଳର ନାକ ଲମ୍ବା ଓ ପାଟି ହାଡ଼ ଚଞ୍ଚୁ ଆକୃତିର । ଏମାନେ ଲାଞ୍ଜକୁଳା ଓ ମାଛ ଏମାନଙ୍କ ମୁଖ୍ୟ ଆହାର । ଲୁଣି ଏମାନଙ୍କ ଚରାଭୂଇଁ ହେଲେ ବି ଖାରମିଶା ମଧୁରିଆ ପାଣିରେ ରହିପାରନ୍ତି । ବନ୍ଧୁ ସମୟରେ 'ନଈ ମୁହାଣ'ରୁ ବଢ଼ି ପାଣି ବେଳେ ଘଡ଼ିଆଳ ଉପରକୁ ଓ ବାହାରକୁ ପଶି ଆସେ । ଘଡ଼ିଆଳ କୁମ୍ଭୀରର ଗୃହଚଳଣ ଓ ଜୀବନଧାରା ବଡ଼ଅଜବ । ଏମାନେ ପାଣିରୁ ଉଠି ମଝିରେ ମଝିରେ ନଈବାଲିରେ ଖରା ଖାଆନ୍ତି । କ୍ୱଚିତ ମାଛ ଗୁଡ଼ ମଣିଷ କିମ୍ବା ଅନ୍ୟ ପ୍ରାଣୀ ଶିକାର କରନ୍ତି । ସ୍ଥିର ଓ ଜଳପଦ ଅଞ୍ଚଳରେ ରହିବାକୁ ପସନ୍ଦ କରନ୍ତି । ଘଡ଼ିଆଳ କୁମ୍ଭୀର ଅଣ୍ଡାର ଯେମିତି ଗୁହିଦା, ଚମଡ଼ା ମଧ୍ୟ ସେମିତି ଦାମିକା । ଏଇ ଦୁଇଟି ମୁଖ୍ୟ କାରଣ ସେମାନଙ୍କ ବଂଶଲୋପର ମୂଳ ରହସ୍ୟ ।

ସତରେ ନଷ୍ଟ ହେବାକୁ ଦେବା ଯେତେ ସହଜ, ବଞ୍ଚାଇ ରଖିବା ସେତେ ସହଜ କାମ ନୁହେଁ । କାଳକ୍ରମେ ଲୋପ ପାଇଯାଉଥିବା ଏହି ବିରଳ ଘଡ଼ିଆଳ କୁମ୍ଭୀରଙ୍କର ବଂଶ ରକ୍ଷା ପାଇଁ ଭାରତରେ ପ୍ରଥମଥର 'ଜାତିସଂଘ ବିକାଶ ଯୋଜନା' ଏବଂ ବଣ୍ୟ ଖାଦ୍ୟ ଓ କୃଷି ସଂସ୍ଥାର କୁମ୍ଭୀର ସୁରକ୍ଷା ବୈଷୟିକ ସଂସ୍ଥାର ମିଳିତ ସହାୟତାରେ ୧୯୭୫ ମସିହାରେ ଆମ ରାଜ୍ୟର ମହାନଦୀର ସାତକୋଶିଆ ଅଭୟାରଣ୍ୟ ଅଞ୍ଚଳରେ 'ଘଡ଼ିଆଳ କୁମ୍ଭୀର ବଞ୍ଚାଅ' ଯୋଜନା ଆରମ୍ଭ କରାଯାଇଥିଲା । ସେତେବେଳକୁ ବ୍ରାହ୍ମଣୀ ଓ

ବୈତରଣୀ ତଥା ଖରସୁଆଁ ନଈରେ ଆଦୌ ଘଡ଼ିଆଳ କୁମ୍ଭୀର ନଥିଲେ । କେବଳ ମହାନଦୀରେ ବଂଶଲୋପ ଅବସ୍ଥାରେ ସେମାନଙ୍କ ସଂଖ୍ୟା ମାତ୍ର ଦଶଟିରେ ସୀମିତ ଥିଲା ।

କଥାରେ ଅଛି—ଇଚ୍ଛାଥିଲେ ଉପାୟ ସ୍ବୟଂ ଆସେ । ବିହାରର ଗଣ୍ଡକ ନଈରୁ ୭୨ଟି ଓ ନେପାଳର ନାରାୟଣୀ ନଈ ଏବଂ ମଧ୍ୟପ୍ରଦେଶର ଚମ୍ବଲ ନଈରୁ କୁମ୍ଭୀର ଅଣ୍ଡା ଆଣି କୃତ୍ରିମ ଉପାୟରେ ଛୁଆ ଫୁଟାଇ ସାତକୋଶିଆ ଗଣ୍ଡରେ ୫୦୦ କୁମ୍ଭୀର ଛୁଆଙ୍କୁ ପ୍ରଥମେ ଛଡ଼ା ଯାଇଥିଲା । ଇତ୍ୟବସରରେ କୁମ୍ଭୀର ଅଣ୍ଡାରୁ କୃତ୍ରିମ ଉପାୟରେ ଛୁଆ ଉପୁଯାଉଥିବା ବିଶ୍ୱର ଏକମାତ୍ର ଚିଡ଼ିଆଖାନା ଆମ ଓଡ଼ିଶାର ବାରଙ୍ଗ ନିକଟବର୍ତ୍ତୀ "ନନ୍ଦନକାନନ"ରୁ ଆଉ ୧୦୦ଟି କୁମ୍ଭୀର ଛୁଆଙ୍କୁ ମଧ୍ୟ ମହାନଦୀରେ ଛଡ଼ାଯାଇଛି । ହେଲେ ଓଡ଼ିଶାରେ ଜୀଅନ୍ତା ଘଡ଼ିଆଳ କୁମ୍ଭୀରଙ୍କ ବଂଶରକ୍ଷା ଯୋଜନା ଶତକଡ଼ା ପଚିଶ ଭାଗ ଫଳବତୀ ହୋଇଛି ବୋଲି କୁହାଯାଉଥିଲେ ହେଁ, ତାହା ଆଶାନୁରୂପ ନୁହେଁ ବୋଲି ଅନେକଙ୍କ ମତ । ଅସଲ କଥା ହେଉଛି, କୁମ୍ଭୀର ଗଣନା ବେଳେ ତାଙ୍କ ଦେହରେ ଚିହ୍ନ ଦିଆଯାଏ—ଯେଉଁଥି ଗଣତିରେ ଭୁଲ ନହୁଏ । ହେଲେ ଥାଇଲଣ୍ଡ ଓ ଦକ୍ଷିଣ ଆଫ୍ରିକା ଭଳି କୁମ୍ଭୀର ଗଣତି ପାଇଁ ନିର୍ଭୁଲ ଓ ନିର୍ଭରଯୋଗ୍ୟ ତରିକା ଓ ଅବଲମ୍ବନ ଅଭାବରୁ କେବଳ ଦୂରରୁ ଥାଇ ପାଣି ଉପରକୁ ହାଁ ଭାଁ ମୁଣ୍ଡ ଟେକୁଥିବା ଓ ଦିଶୁଥିବା କୁମ୍ଭୀର ମୁଣ୍ଡ ଦେଖି ଆମ ରାଜ୍ୟରେ ଗଣତି କରାଯାଉଛି ।

ହଦଗଡ଼ ଅଥବା କେବଳ ସାତକୋଶିଆ ଗଣ୍ଡ ନୁହେଁ, ଭିତର କନିକା କୁମ୍ଭୀର ଅଭୟାରଣ୍ୟର ଲୁଣିପାଣିଆ ଘଡ଼ିଆଳ କୁମ୍ଭୀର ଯୋଜନା ଏସିଆର ଏକ ବୃହତ୍ କେନ୍ଦ୍ର ଓ ବିଶ୍ୱର ଦୀର୍ଘକାୟ ୧୨୦ଟି ଚିହ୍ନିତ ବିରଳ କୁମ୍ଭୀରଙ୍କ ମଧ୍ୟରୁ ଏଠାରେ ୧୯ ଫୁଟରୁ ୨୪ ଫୁଟ ଦୈର୍ଘ୍ୟ ବିଶିଷ୍ଟ ପ୍ରାପ୍ତ ୨୮ଟି ବିରଳ କୁମ୍ଭୀରଙ୍କ ଚରଭୂଇଁ ବୋଲି ଥାଇଲଣ୍ଡର ଜଣେ କୁମ୍ଭୀର ଅନୁଧ୍ୟାନକାରୀ ସଙ୍ଗଣଙ୍କ ଅଭିଲେଖ ଓ ପରିସଂଖ୍ୟାନରୁ

ସୂଚୀତ । ଏହି ଯୋଜନା ଅନ୍ତର୍ଗତ ୧୯୭୯ରେ ପ୍ରତିଷ୍ଠିତ ଡାଙ୍ଗମାଳ କେନ୍ଦ୍ରରୁ ତିନି ହଜାର ଅଣ୍ଡା ସଂଗ୍ରହ କରାଯାଇ ତହିଁରୁ ଜନମିଲା ୯୭୩ଟି ଲୁଣିପାଣି କୁମ୍ଭୀର ଛୁଆଙ୍କୁ ଛଡ଼ାଯାଇଥିବା କଥା ଆମ ରାଜ୍ୟର ମୁଖ୍ୟ ବନ୍ୟଜନ୍ତୁ ଓ୍ୱାର୍ଡେନଙ୍କ ବକ୍ତବ୍ୟରୁ ସୂଚିତ ।

କଥାରେ ଅଛି—'ଅରକ୍ଷିତକୁ ଦଇବ ସାହା ।'' ମଞ୍ଜିରୁ ଗଛଟିଏ ଉପୁଜାଇ ତାକୁ ରୋପିବା ଓ ତାକୁ ଖରା, ବର୍ଷା, ଗୋରୁ-ଗାଈ, ଛେଳି ଆଦି ଭକ୍ଷକଙ୍କ ଦାଉରୁ ବଞ୍ଚାଇ ବଢ଼ିବାକୁ ଓ ଫୁଲଫଳ ଧରି ବଂଶ ବିସ୍ତାର କରିବାକୁ ଦେବା ଏକା କଥା ନୁହେଁ । ସତ୍ୟର କଥା, ଲୋପ ପାଇଯାଉଥିବା ୧୯୭୫ର ମାତ୍ର ଦଶଟି ଘଡ଼ିଆଳ କୁମ୍ଭୀରଙ୍କ ବଂଶ ରକ୍ଷା ଓ ବିସ୍ତାର ପାଇଁ ଏଇ ୧୩ ବର୍ଷ ଧରି ଓଡ଼ିଶା ଉଦ୍ୟାନବିଭାଗ ଓ ସତତ ପ୍ରଚେଷ୍ଟା । ହେଲେ କୁମ୍ଭୀର ସଂରକ୍ଷଣ ପାଇଁ ନିରୂପିତ ଏଇସବୁ ଅଭୟାରଣ୍ୟରେ ମାଛ ଧରିବା ପାଇଁ ଲାଇସେନ୍ସପ୍ରାପ୍ତ ଧୀବରମାନଙ୍କ ଉପଦ୍ରବ ଓ ଦୌରାତ୍ମ୍ୟ ହେତୁ ଛଡ଼ାଯାଇଥିବା କୁମ୍ଭୀରଛୁଆ ବହୁ କ୍ଷେତ୍ରରେ ସେମାନଙ୍କ ଜାଲରେ ପଡ଼ି ପ୍ରାଣ ହରାଇଥିବା ମିଛ ନୁହେଁ ବୋଲି ବହୁ କୁମ୍ଭୀର ବିଶାରଦଙ୍କର ସ୍ପଷ୍ଟ ଅଭିମତ । ତା'ଛଡ଼ା ଘଡ଼ିଆଳ କୁମ୍ଭୀରଙ୍କର ଗମନାଗମନ, ଖାଦ୍ୟପେୟ, ବିକାଶ, ସ୍ଥାନାନ୍ତର ଆଦି ବିଗଡ଼ୁଛି ଏବେଠୁ ସଜାଗ ଓ ସଚେତନ ନ ହେଲେ ସେମାନଙ୍କର ବଂଶ ପୁଣି ହୁଏତ କ୍ରମଶଃ ଲୋପ ପାଇଯାଇପାରେ ଆଉ କିଛି ବର୍ଷ ପରେ ।



# ଜଙ୍ଗଲ ସୁନ୍ଦରୀ

**ଯେ**ତେ ପଶୁ ପକ୍ଷୀ, ସେତେ 'ଲେଖା'; ଅର୍ଥାତ ଗ୍ଲୋଟ ପିଲାଙ୍କୁ ଥାପୁ-ଡ଼େଇ ଶୋଇପକାଇଲାବେଳେ ଆମ ଗାଁ ଗହଳର ମାଆ ଭଉଣୀଏ ଗାଆନ୍ତି—

"ମୋ ଧନ ପର କଏ ହେବରେ,
ଉଡ଼ିଯାଉଥିଲେ ଜଙ୍ଗଲ ସୁନ୍ଦରୀ
ଧରିଆଣି କଏ ଦେବରେ ।"

ଏହି 'ଜଙ୍ଗଲ ସୁନ୍ଦରୀ'କୁ ଇଂରାଜୀରେ 'ଲାଲ ସୁନ୍ଦରୀ' କୁହନ୍ତି । ହିନ୍ଦୀରେ ଏଇ ଚଢ଼େଇର ନାଆଁ 'ପାହାଡ଼ି ବୁଲବୁଲ' । କେବଳ ଆମ ରାଇଜର ଗହନ ବଣ ଓ ଜନପଦରେ ନୁହେଁ; ବାଂଲାଦେଶ, ପାକିସ୍ତାନ ଓ ଚୀନ ସମେତ ଭାରତର କେତେକ ଜଙ୍ଗଲରେ ଏହି ପକ୍ଷୀ ଏବେ ବି ଅଛନ୍ତି । ଦେଖିବାକୁ 'ପରୀ' ଭଳି ଯେମିତି ସୁନ୍ଦର, ଚାଲିଚଳନ ଓ କୂଜନ ସେମିତି ଚିତ୍ତାକର୍ଷକ । କେହି କେହି ଏଇ ଚଢ଼େଇକୁ 'ଜଙ୍ଗଲପରୀ' ବୋଲି ମଧ୍ୟ କୁହନ୍ତି ।

କଥାଟିଏକୁ ନଥାଟିଏ । ଜଣାଶୁଣା କଥାକାର 'ଆଣ୍ଡରସନ'ଙ୍କର "ସମ୍ରାଟ ଓ ଜଙ୍ଗଲ ସୁନ୍ଦରୀ" ନାମକ ସୁନ୍ଦର ଗପଟିଏ ଅଛି । ତାହା ହେଉଛି ଏହିଭଳି—ଚୀନ ଦେଶର ଜଣେ ସମ୍ରାଟ ଭାରି ସୌଖୀନ ଥିଲେ ଓ ତାଙ୍କର ସୁନ୍ଦର ରାଜବାଟିକାଟିଏ ଥିଲା । ନାନା ଜାତିର ଫଳଫୁଲଭରା ଏହି ରାଜବାଟିକା ସୁନ୍ଦର ସୁନ୍ଦର ଚଢ଼େଇଙ୍କର ପ୍ରମୋଦ ବିହାରସ୍ଥଳୀ ଥିଲା । ଅବେଳା ସମୟରେ ସମ୍ରାଟ ରାଜବାଟିର ସୌନ୍ଦର୍ଯ୍ୟ ଉପଭୋଗରେ ଲିପ୍ତ ରହୁଥିଲେ । ପ୍ରତିଦିନ 'ଜଙ୍ଗଲ ସୁନ୍ଦରୀ'ଟିଏ ମଝିରେ ମଝିରେ ଗୀତ ଗାଏ । ସମ୍ରାଟ ସେ ଗୀତ ଶୁଣି ମାନସିକ ତୃପ୍ତି ଅନୁଭବ କରୁଥିଲେ । କ୍ରମଶଃ ସମ୍ରାଟ ଜଙ୍ଗଲ ସୁନ୍ଦରୀ ପ୍ରତି ଆକୃଷ୍ଟ ହେଲେ । ଶେଷରେ ଲୋକ ଲଗାଇ ଚଢ଼େଇଟିକୁ ଆଣି ରାଜ ଦରବାରରେ (ନିଜ ବୈଠକଖାନାରେ) ସୁନା ପଞ୍ଜୁରୀରେ ରଖାଇଲେ । ପ୍ରତିଦିନ ଜଙ୍ଗଲ

ସୁନ୍ଦଶର ସୁନ୍ଦର ରୂପ ଓ ସୁମଧୁର ଗୀତ ଶୁଣି ସମ୍ରାଟ ଖୁସି ହୁଅନ୍ତି ଓ ସୁଖରେ ନିଦ୍ରା ଯାଆନ୍ତି । ନୂଆବର୍ଷ ଉପଲକ୍ଷେ ସେଥର ଜାପାନ ସମ୍ରାଟ ଚୀନ ସମ୍ରାଟଙ୍କ ପାଖକୁ ଏକ ଅଜବ ଉପହାର ପଠାଇଲେ—ତାହା ଥିଲା କଳ ତିଆରି ଗୋଟିଏ ସୁନାଚଢ଼େଇ । ଦେଖିବାକୁ ଏସେ ଠିକ୍ ଜଙ୍ଗଲ ସୁନ୍ଦଶୀ ପରି । ଗୃହ ମୋଡ଼ିଲକ୍ଷଣି ସେହି ସୁନା ଚଢ଼େଇଟି ଗୀତ ଗାଏ—ଗୃହ ସରିଗଲେ ଥମିଯାଏ ।



ସୁନା ଚଢ଼େଇଟିର ସେ ଗୀତ ଶୁଣି ସମସ୍ତେ ଚମତ୍କୃତ ମୁଗ୍ଧ ହୋଇଥିଲେ । ଏକା ସମ୍ରାଟ କାହିଁକି, ତାଙ୍କର ଆଉ ପାଖ ଲୋକେ ବି ଅନବରତ ସେହି ସୁନା ଚଢ଼େଇର ଗୃହ ମୋଡ଼ି ସମ୍ରାଟଙ୍କୁ ଗୀତ ଶୁଣାଇବାରେ ବ୍ୟସ୍ତ ରହିଲେ । କିଛିଦିନ ପରେ କଳ ଚଢ଼େଇଟି ବିଗିଡ଼ିଗଲା—ତା'ର ସ୍ୱର ବି ବଦଳି ଗଲା । ମରାମତି ପରେ ତାହା ସେମିତି ଆଗଭଳି ଗୀତ ଗାଉ ନ ଥାଏ ।

କଥାରେ ଅଛି—‘କାହାର ପୁଷ ମାସ କାହାର ସର୍ବନାଶ’’ । ସମସ୍ତେ ନକଲ କଳ ଚଢ଼େଇ ପଛରେ ବ୍ୟସ୍ତ । ଅସଲ ଜଙ୍ଗଲ ସୁନ୍ଦରୀ ତେଣେ ସୁନା ପଞ୍ଜୁରୀରେ ଅଖୋଜା ଅଲୋଡ଼ା ରହି ଦିନ କାଟୁଥାଏ । ଦିନେ ମନଦୁଃଖରେ ଗୋଡ଼ର ଶିକୁଳି ଦାନ୍ତରେ କାଟି ଜଙ୍ଗଲ ସୁନ୍ଦରୀ ସୁନା ପଞ୍ଜୁରୀରୁ ଉଡ଼ି ପଳାଇଲା—ଆଉ ତାର ପତ୍ତା ବା ଖୋଜଖବର ମିଳିଲା ନାହିଁ । ସମ୍ରାଟ କଳ-ଚଢ଼େଇର କର୍କଶ ସ୍ୱର ଶୁଣି ଚିଡ଼ଚିଡ଼ା ହେବାକୁ ଲାଗିଲେ । କ୍ରମଶଃ ତାଙ୍କର ଶାରୀରିକ ଓ ମାନସିକ ଅବନତି ଦେଖାଗଲା । ତୀବ୍ର ମାନସିକ ଅଶାନ୍ତି ଭିତରେ ସମ୍ରାଟ ଅସଲି ଜଙ୍ଗଲ ସୁନ୍ଦରୀଟିକୁ ଖାଲି ଝୁରି ହେଉଥାନ୍ତି ମନେ ମନେ । ସମସ୍ତଙ୍କର ଭାବନା, ସମ୍ରାଟ ଏ ଅବସ୍ଥାରୁ କିପରି ଉଦ୍ଧାର ପାଇବେ । ସମ୍ରାଟ ରୁଗ୍‌ଣ ଅବସ୍ଥାରେ ଆସନ୍ନ ମୃତ୍ୟୁ ଅପେକ୍ଷାରେ ଥାଆନ୍ତି । ଯୋଗକୁ ରାଜବାଟୀ ଛାଡ଼ି ପଳେଇ ଯାଇଥିବା ଜଙ୍ଗଲ ସୁନ୍ଦରୀ ସମ୍ରାଟଙ୍କ ଏ ଅବସ୍ଥା ହେତୁ ଟାଣିହୋଇ ପୁଣି ପଳେଇ ଆସିଲା—ସିଧା ସମ୍ରାଟଙ୍କ ଶୋଇଲା କୋଠରୀକୁ । ଆଗଭଳି ସେ ଗୀତ ଗାଇବାକୁ ଲାଗିଲା । ରୁଗ୍‌ଣ ସମ୍ରାଟ କ୍ରମଶଃ ଆରୋଗ୍ୟଲାଭ କଲେ ଓ ନୂଆ ଜୀବନ ଫେରି ପାଇଲେ ।

ଜଙ୍ଗଲ ସୁନ୍ଦରୀ ଦେଖିବାକୁ ଠିକ୍ ଗୋବରା ଚଢ଼େଇଠାରୁ ଆକାରରେ ଟିକଏ ସାନ । ଅଣ୍ଡିରା ଜଙ୍ଗଲସୁନ୍ଦରୀର ପିଠିପାଖ ଚକ୍‌କଣ କଳା ରଙ୍ଗର, ଅଥଚ ପିଠିତଳ କମଳା ରଙ୍ଗର । କିନ୍ତୁ ମାଈ ଜଙ୍ଗଲସୁନ୍ଦରୀ ପିଠି ଧୂସରିଆ-ହଳଦୀ ଓ ଚକଚକିଆ କଳାରଙ୍ଗର । ଦୁଇ ଡେଣାରେ ଥିବା ହଳଦିଆ ରଙ୍ଗର ପଟି ଦେଖିବାକୁ ଖୁବ୍ ସୁନ୍ଦର ଲାଗେ । ଅଣ୍ଡିରା ଜଙ୍ଗଲ ସୁନ୍ଦରୀଟିଏ ଯେତେ-ବେଳେ ଖରାରେ ଉଡ଼ିଯାଏ—ତାର ଡେଣାର ଉଜ୍ଜ୍ୱଳ ଘନ ଲୋହିତ ରଙ୍ଗ ଝଲମଲ ଦିଶେ । ଉଡ଼ିଗଲାବେଳେ ସେମାନେ ‘ହୁଇଟର୍...ହୁଇଟର୍’ ଶବ୍ଦକରି ସତେ ଯେମିତି ଗୀତ ଗାଆନ୍ତି । ରଙ୍ଗୀନ ଫୁଲ ଫଳ ଯେଉଁଠି ସେଇଟି ସେମାନଙ୍କର ଆଡ୍ଡା । ଆଉ ସବୁ ବଣୁଆ ଚଢ଼େଇଙ୍କ ଠାରୁ ସେମାନେ ଯେମିତି ନିଆରା । ଦେଖିବାକୁ ଯେମିତି ସୁନ୍ଦର ଓ ସୁଧାର ପ୍ରକୃତିର । ଦେଖିଲାକ୍ଷଣି ଆଖି ଲାଖି ରହିଯାଏ ।

ବିଶେଷକରି ଡାଳ ପଲ୍ଲବର ଚନ୍ଦ୍ରାତପ ଉପରେ ଉଡ଼ା ଓ ଫୁଲ ଯାଞ୍ଚିବେଳେ ଏମାନର କୂଜନ ଭାରି ଚିତ୍ତାକର୍ଷକ ।

ଜଙ୍ଗଲସୁନ୍ଦରୀ ସ୍ୱଭାବତଃ ମେଳାପି ଓ ଦଳଗତ ଜୀବନକୁ ଭଲପାଏ । ମାଈ ଓ ଅଣ୍ଡିରା ଚଢ଼େଇ ଜୁଆଙ୍କ କରିଛଡ଼ା ହୁଅନ୍ତି ନାହିଁ । ସାଧାରଣତଃ ଏମାନେ ଗୋଟିଏ ଦଳରେ ପାଞ୍ଚ ଛଅଟି ରୁହନ୍ତି । କିନ୍ତୁ ବର୍ଷର ଅନ୍ୟ ଋତୁରେ ବିଶେଷତଃ ଶୀତ ଋତୁରେ ଗୋଟିଏ ଯୂଥ ବା ଦଳରେ ତିରିଶରୁ ବେଶୀ ଚଢ଼େଇ ଏକା ସାଙ୍ଗରେ ଥିବାର ଦେଖାଯାଆନ୍ତି । କେବେକେବେ ଅଣ୍ଡିରା ମାଈ ଓ ଶ୍ରେଷ୍ଠ ଚଢ଼େଇ ସବୁ ଅଲଗା ଅଲଗା ଦଳରେ ଉଡ଼ିବୁଲନ୍ତି ଓ ଆହାର ଉଣ୍ଡନ୍ତି । ଗୋଟିଏ ମାଈ ଜଙ୍ଗଲ ସୁନ୍ଦରୀ ଥରକେ ଦୁଇଟିରୁ ତିନୋଟି ଅଣ୍ଡା ଦିଏ ଓ ଏହି ଅଣ୍ଡା ଦେବା ବର୍ଷରେ ଦୁଇଥରରେ ସୀମିତ ଥାଏ । ଏହି ଅଣ୍ଡା କଳା ସବୁଜ ରଙ୍ଗର ଓ ତା ଉପରେ ଘନ ବାଦାମୀ ଓ ଫିକା ନୀଳରଙ୍ଗର ଛିଟା ଓ ଟିପା ପଡ଼ିଥାଏ । ଜଙ୍ଗଲ ସୁନ୍ଦରୀର ଅଭିରୁଚି ଯେମିତି ତାର ନୀଡ ମଧ୍ୟ ଦେଖିବାକୁ ଠିକ୍ ସେମିତି ସୁନ୍ଦର । ଏହି ନୀଡ ଦେଖିବାକୁ ଠିକ୍ ଗମ୍ଭୀରିଆ କିନ୍ତୁ ଭଲ । ଗଛ ଡାଳରେ 'ଜଙ୍ଗଲସୁନ୍ଦରୀ' ନିରାପଦ ସ୍ଥାନରେ ବସା ବାନ୍ଧେ । ଭିତରେ କାଠିକୁଟା, କଅଁଳିଆ ଘାସ ବିସ୍ତୃତ ହୋଇଥାଏ ଓ ବାହାରେ ହରିତା



ଫରଫୁରୀ ଓ ମାକଡ଼ସା ଅଣ୍ଡାର ଖୋଳ ଦେଖାଯାଇଥାଏ । ଏହା ଭୂଇଁଠାରୁ ପ୍ରାୟ ୧୦।୧୫ ମିଟର ଉଚ୍ଚରେ ଥାଏ । ମିଠାଫଳ, ବଣୁଆ କୋଳି, ଫୁଲ କେଶର, ପୋକଜୋକ ଓ ପାଚିଲା ଖେତର ଶସ୍ୟ ଏମାନଙ୍କର ପ୍ରିୟ ଆହାର ।

ପାଚିଲା ଫଳ ଓ ଫୁଲକୁ ଜଗିରହି, ସେମାନଙ୍କ ନାଶକାରୀ ପୋକଜୋକଙ୍କୁ ଏମାନେ ଖାଇଯାଆନ୍ତି ଓ ବହୁ କ୍ଷେତ୍ରରେ ଗୋଟିଏ ଫୁଲରୁ ପୋକ ଖାଇ ଅନ୍ୟ ଫୁଲକୁ ଉଡ଼ିଯିବା ଦ୍ୱାରା ପରାଗ ସଙ୍ଗମରେ ମଧ୍ୟ ସାହାଯ୍ୟ କରିଥାଆନ୍ତି ।

ସଂପ୍ରତି 'ଜଙ୍ଗଲ ସୁନ୍ଦରୀ'ଙ୍କ ସଂଖ୍ୟା କ୍ରମଶଃ ହ୍ରାସ ପାଇବାରେ ଲାଗିଛି । କଥାରେ ଅଛି, 'ବରଷା ହେଲେ ନଈରେ ବଢ଼ି : ବଣ ଉଜୁଡ଼ିଲେ ବଣୁଆ ଚଢ଼େଇ ବଂଶ ବୁଡ଼ି ।" ବନ୍ୟ ସଂରକ୍ଷଣ ଓ ପରିବେଶର ସମ୍ପୂର୍ଣ୍ଣ ସୁରକ୍ଷଣ ହେଲେ 'ଜଙ୍ଗଲସୁନ୍ଦରୀ'ଙ୍କ ବଂଶ ରକ୍ଷା ଓ ସଂଖ୍ୟାବୃଦ୍ଧି ସମ୍ଭବ—ଏଥିରେ ଦ୍ୱିମତ ନ ଥାଇପାରେ । 'ଜଙ୍ଗଲ ସୁନ୍ଦରୀ ବା ପାହାଡ଼ି ବୁଲ୍‌ବୁଲ୍' ଆମ ଦେଶରେ ଏକ ଦୁର୍ଲ୍ଲଭ ଓ ସୁନ୍ଦର ବନ୍ୟପକ୍ଷୀଙ୍କ ମଧ୍ୟରୁ ଅନ୍ୟତମ ପକ୍ଷୀ । ତାହାର ସୁରକ୍ଷା

ଓ ନିରାପଦ ଜୀବନଯାପନ ପ୍ରତି ଦୃଷ୍ଟି ଦେବା ଆମ ସମସ୍ତଙ୍କର ଏକ ସାମୁହିକ ଓ ମାନବିକ କର୍ତ୍ତବ୍ୟ । ଖାଲି ନିଜେ ବଞ୍ଚିଲେ ସବୁକିଛି ହୁଏନା । ଆମେ ଭୁଲିଯିବା ଅନୁଚିତ କବି ମହମ୍ମଦ ଇକବାଲଙ୍କର ସେଇ ଲୋକପ୍ରିୟ ଜାତୀୟ ଗୀତର ଏଇ ପଦଟିକୁ—

"ସାରେ ଜହାଁସେ ଆଚ୍ଛା
ହିନ୍ଦୁସ୍ଥାନ ହମାରା
ହମ ବୁଲ୍‌ବୁଲ ହେଁ ଇସ୍‌କା
ଏ ଗୁଲସ୍ଥାନ ହମାରା ।"



# ଆଫ୍ରିକା ଜଙ୍ଗଲର ପଶୁ ସିମ୍ପାଞ୍ଜୀ

ସିମ୍ପାଞ୍ଜୀକୁ ଦେଖିଲେ ମନେହେବ ଯେ ସେ ପଶୁ ନୁହେ ; ମଣିଷଟିଏ । ଆମର ପୂର୍ବ-ପୁରୁଷ ମାଙ୍କଡ଼ ଥିଲେ ବୋଲି ପ୍ରାଣୀବିଜ୍ଞାନୀ ମତ ଦିଅନ୍ତି । ଏଇ ଆଦିମାନବ ଶ୍ରେଣୀ ଜାତିର ମାଙ୍କଡ଼ । ସେମାନେ ହେଲେ ଗରିଲା, ସିମ୍ପାଞ୍ଜୀ ଓରାଙ୍ଗଉଟାନ୍ ଓ ଗୀବନ । କେତେକ ଏମାନଙ୍କୁ ଆଦିମାନବ କହୁଥିଲାବେଳେ ଆଉ କେହି କେହି ଏମାନଙ୍କୁ ବଣମଣିଷ କୁହନ୍ତି । ମଣିଷଙ୍କ ସଂଖ୍ୟା ହୁ ହୁ ବଢ଼ୁଥିବାବେଳେ, ଜଙ୍ଗଲ, ପରିବେଶ, ଜଳବାୟୁ ଓ ସେମାନଙ୍କ ଖାଦ୍ୟପେୟ ମଣ୍ଡଳ ବଢ଼ୁଛି । ଏବେ ଅନ୍ୟ ଭିନ୍ନ ଜାତିର ମାଙ୍କଡ଼ଙ୍କ ଭଳି ସିମ୍ପାଞ୍ଜୀ କ୍ରମଶଃ ଲୋପ ପାଇବାରେ ଲାଗିଲେଣି । ବଣମଣିଷଙ୍କ ଭିତରେ ଗରିଲା ସବୁଠାରୁ ଆକାରରେ ବଡ଼, ବଳୁଆ ଓ ଦେଖିବାକୁ ଭୟଙ୍କର; ହେଲେ ସିମ୍ପାଞ୍ଜୀ ସବୁଠାରୁ ବୁଦ୍ଧିଆ ଓ ସୁଧାର ପ୍ରାଣୀ ।

ସିମ୍ପାଞ୍ଜୀର ଜନ୍ମକାଳ କେବେ ସେ ସମ୍ପର୍କରେ ମତାନ୍ତର ସତ୍ତ୍ୱେ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ସେମାନଙ୍କର ଉପସ୍ଥିତି ଠାବ କରାଯାଇଥିଲା ବୋଲି ବହୁଲୋକ ମତ ପ୍ରକାଶ କରନ୍ତି । ଆଫ୍ରିକା ମହାଦେଶର କଙ୍ଗୋନଦୀ ଅବବାହିକା ହେଉଛି ସିମ୍ପାଞ୍ଜୀର ଚରାଭୂଇଁ, ଯେଉଁଠି ସୂର୍ଯ୍ୟକିରଣ ଭୂଇଁକୁ ଛୁଏଁ ନାହିଁ—ଟିକିଏ ଉଷୁମ ଜାଗା ସିମ୍ପାଞ୍ଜୀର ଖୁବ୍ ପ୍ରିୟ ଭିଟାଭୂଇଁ । ଆମ ପୂର୍ବପୁରୁଷଙ୍କ ଭଳି ସେମାନେ ଯାଯାବର । ଗୋଟିଏ ଜାଗାରେ ୪।୬ ଦିନରୁ ଅଧିକ ଡେରାପକାନ୍ତି ନାହିଁ । ଘୂରିବୁଲି କଅଁଳ ଡାଳପତ୍ର, ଫୁଲ, ଫଳ ଛିଡ଼ାଇ ଖାଆନ୍ତି । ତୋଫା ଓ ସଫା ପାଣି ଢକଢକ କରି ପିଇଶୋଷ ମେଣ୍ଟାନ୍ତି । ସଞ୍ଜ ନଇଁଲେ ଯେତେବେଳେ ଥକି ପଡ଼ନ୍ତି, ଆଲକୁସ, ମେହଗାନି ଓ ରବର ଅଥବା ପାଇନ ଗଛର ଅଗଡାଳ ପତ୍ରକୁ ଏକାଠି ଭିଡ଼ି ଛନ୍ଦାଛନ୍ଦି କରି ଗୋଟିଏ ପଲଙ୍କ ତିଆରି କରନ୍ତି ଓ ତା' ଭିତରେ ରାତିରେ ଆରାମରେ ବିଶ୍ରାମ କରନ୍ତି । ମାଆ-ସିମ୍ପାଞ୍ଜୀ ଅଗଡାଳରେ ପିଲାକବିଲାଙ୍କୁ କୋଳରେ ଧରି ଶୁଏ ; ହେଲେ ଦଳର ମୁଖିଆ ଅଣ୍ଡିରା ସିମ୍ପାଞ୍ଜୀ ଗଛମୂଳେ ଡାଳପତ୍ରର ବିଛଣା ପାରି ଜଗୁଆଳି ଭଳି ସମସ୍ତଙ୍କୁ ଜଗିରହେ । ରାତି ପାହି

ସକାଳ ହେଲେ ସିମ୍ପାଞ୍ଜୀ ଶେଯଛାଡ଼ି କେତେବେଳେ ଘଞ୍ଚ ଜଙ୍ଗଲର ସନ୍ତସନ୍ତିଆ ଭୂଇଁରେ ଦୌଡ଼ନ୍ତି ତ କେବେ ଏ ଗଛରୁ ସେ ଗଛକୁ ଡିଅନ୍ତି, ଫଳଫୁଲ ପତ୍ର ଖାଇ ବୁଲନ୍ତି । ଚଢ଼େଇ ଓ ପଶୁଙ୍କୁ ଏମାନେ ଡରନ୍ତି ନାହିଁ ବା ହରୁଡ଼ାନ୍ତି ନାହିଁ, ଏମାନେ ସୁଧାର ଓ ଶାନ୍ତିପ୍ରିୟ ପ୍ରାଣୀ । ଆଘାତ ବା



ଆକ୍ରମଣର ଇଶାରା ନ ଥାଇ ସିମ୍ପାଞ୍ଜୀ ଭୁଚ୍ଛାଟାରେ କେବେ ଆଗ ଚଢ଼ାଉ କରେ ନାହିଁ । ଅହେତୁକ ଭୟନେଇ ଏମାନେ ରଡ଼ି କରନ୍ତି, ବିକଟାଳ ଚିତ୍କାର କରନ୍ତି ଓ ଛାତିରେ ହାତ ବାଡ଼େଇ ଶତ୍ରୁଙ୍କୁ ଘଉଡ଼େଇବା ପାଇଁ ହୋ-ହାଲ୍ଲା କରନ୍ତି ।

ସେଥିରେ ଶକ୍ତ ପଲେଇ ନ ଟଲେ ଗଛରୁ ଡ଼ାଳଭାଙ୍ଗି ବାଡ଼ାଇବା ପାଇଁ ଗୋଡ଼ାନ୍ତି ।

ଆମଭଳି ସିମ୍ପାଞ୍ଜୀମାନେ ମିଳମିଶି ଦଳ ବାନ୍ଧି ରହନ୍ତି । ଗୋଟିଏ ଦଳରେ ଦୁଇରୁ କୋଡ଼ିଏଟି ସିମ୍ପାଞ୍ଜୀ ଥାଆନ୍ତି । ଦଳ ଭିତରେ ଯେଉଁ ଅଣ୍ଡିରା ସିମ୍ପାଞ୍ଜୀ ସବୁଠାରୁ ପୁରୁଖା, ବଳୁଆ ଓ ମାଈ ସିମ୍ପାଞ୍ଜୀ ଯାହାର ବେଶି ପିଛା କରନ୍ତି ସେ ଦଳର ମୁଖିଆ ହୁଏ । ଦଳର ଶ୍ରେଷ୍ଠବଡ଼ ସଭିଏଁ ତା କଥା ବେଦର ଗାର ଭଳି ମାନନ୍ତି । ଅଣ୍ଡିରା ସିମ୍ପାଞ୍ଜୀ ଛୁଆ ସିମ୍ପାଞ୍ଜୀଙ୍କ ପାଇଁ ଖାଦ୍ୟ ସଂଗ୍ରହ କରେ । ମାଈ ସିମ୍ପାଞ୍ଜୀ ସେମାନଙ୍କୁ ଦେଖାଶୁଣା ଓ ହେପାଜତ କରେ । ମାଈ ସିମ୍ପାଞ୍ଜୀ ବର୍ଷକରେ ଗୋଟିଏ ଛୁଆ ଜନ୍ମକରେ ଓ କ୍ରମଶଃ ଶିଶୁ ସିମ୍ପାଞ୍ଜୀ ଚଲାବୁଲା ଖିଆପିଆ ଶିଖିବାରେ ଅଭ୍ୟାସ କରେ । ପ୍ରାୟ ୨ ବର୍ଷ ବେଳକୁ ସେ ଆପେ ଚଲାବୁଲା କରେ । ହେଲେ ୧୨ ବର୍ଷ ବେଳକୁ ସିମ୍ପାଞ୍ଜୀ ପାଣବାର ପଣିଆ ହୋଇଯାଏ । ସେପର୍ଯ୍ୟନ୍ତ ମାଈ ଓ ଅଣ୍ଡିରା ସିମ୍ପାଞ୍ଜୀ ତାର ହେପାଜତ କରନ୍ତି ।

ସିମ୍ପାଞ୍ଜୀ ଲାଞ୍ଜବିହୀନ ପ୍ରାଣୀମାନଙ୍କ ଭଳି ଦେଖାଯାଉଥିଲେ ମଧ୍ୟ, ମୁହଁ, ଗୋଡ଼ ଦେହ ହାତର ଆକୃତି କଚ୍ଛୁଟା ନଆବା । ସିମ୍ପାଞ୍ଜୀର ଉଚ୍ଚତା ସାଧାରଣତଃ ସାଢ଼େଚ୍ଛରରୁ ଛଅଫୁଟ । ସେ ଦୁଇଗୋଡ଼ରେ ଚାଲେ ଓ ଠିଆ ହେଲାବେଳେ ତାର ଦୁଇହାତକୁ ତଳକୁ ଝୁଲାଏ । ହାତ ଦୁଇଟି ତୁଳନାରେ ଗୋଡ଼ ଯୋଡ଼ିକ ଶ୍ରେଷ୍ଠ । ସିମ୍ପାଞ୍ଜୀର ହାଡ଼, ମାଂସ ଖୁବ୍ ଶକ୍ତ ଓ ସେ ଖୁବ୍ ବଳୁଆ । ତିନିଜଣ ମଣିଷଙ୍କଠାରୁ ତାର ତାକତ୍ ବେଶି । ସେ ମଣିଷ ପରି ଦୁଇ ହାତରେ ଖାଏ, ବସିପାରେ । ଅନ୍ୟ ପଶୁଙ୍କ ତୁଳନାରେ ସିମ୍ପାଞ୍ଜୀର ଉପସ୍ଥିତ ବୁଦ୍ଧି ବେଶି । ଦାନ୍ତ ନକୁଟି ଯେମିତି ହସିପାରେ, ପେଁ ପେଁ ହୋଇ ବାହୁନେଇ କାନ୍ଦିପାରେ ମଧ୍ୟ । ଅନୁକରଣ କରି ଓ ଦେଖି ଶିଖି ସିମ୍ପାଞ୍ଜୀ ନ କଲା କାମ କରିପାରେ ବୋଲି ସିମ୍ପାଞ୍ଜୀ ଗବେଷଣା ପରିଷଦ ପକ୍ଷରୁ ପ୍ରକାଶ । ଗୋଟିଏ ସିମ୍ପାଞ୍ଜୀର ସାଧାରଣ ଆୟୁ ପ୍ରାୟ ଚାଳିଶରୁ ପଚାଶବର୍ଷ ଭିତରେ ସୀମିତ । ସିମ୍ପାଞ୍ଜୀ ଖେଳେ, କୁଦେ, କାବଡ଼ି ପ୍ରିୟ, ଡ଼ିଏଁ ହେଲେ ପହଁରିପାରେ

ନାହିଁ । ସିମ୍ପାଞ୍ଜୀ ନିରାମିଷାଶୀ । ଗଛରୁ କଅଁଳ ଡାଳପତ୍ର, ଫୁଲ ଫଳାଦି ତା'ର ଆହାର । ପାଟିସୁଆଦ ପାଇଁ କେବେ କେବେ ଅକାଳେ ସକାଳେ ଉଇ, କାଇ, ପ୍ରଜାପତି, ଝିଣ୍ଟିକା ଆଦି ପୋକଜୋକ ଖାଆନ୍ତି ।

କଥାରେ ଅଛି ଯେ ଦେଶ ଯାଇ, ସେ ଫଳ ଖାଇ । ଆଫ୍ରିକାର ଘନ ଜଙ୍ଗଲର ଏହି ବିଚିତ୍ର ବନ୍ୟପ୍ରାଣୀ ସିମ୍ପାଞ୍ଜୀ ଦେଶ ବିଦେଶରେ ବଡ଼ ବଡ଼ ଚିଡ଼ିଆଖାନାରେ କେବଳ ଆକର୍ଷଣର କେନ୍ଦ୍ରବିନ୍ଦୁ ନୁହନ୍ତି—ଜଂଗଲ, ଚିଡ଼ିଆଖାନା ପଞ୍ଜୁରି ଏଡ଼ି ଏବେ ପୃଥିବୀର କେତେସ୍ଥ ବଡ଼ ସହରରେ ମଣିଷର ଖୁବ୍ ପୋଷାମାନେ । କଥା ବୁଝେ, ବୁଝେ, ଠାରେ, ବୋଲମାନେ ପିଆନୋ ବଜାଏ, ଚଳଚ୍ଚିତ୍ରରେ ଅଭିନୟ କରିବାରେ ଯେଭଳି ସମର୍ଥ, ଗାଡ଼ି ଚଳେଇବା ଓ ନିର୍ଦ୍ଦେଶ ଭଳି ବଡ଼କଲ କଥା ମାନିବାରେ ଧୁରନ୍ଧର । ଛୋଟ ସିମ୍ପାଞ୍ଜୀ ମଣିଷ ପିଲାଙ୍କ ଭଳି ଭାରି ଗେହ୍ଲା । ମାଆକୋଳରେ କାଖହେଲେ ଭାରି ଖୁସି ହୁଏ । ମାଆ କୋଳରେ ଛୋଟ ପିଲାଟିଏ ଭଳି ସିମ୍ପାଞ୍ଜୀକୁ କାଖ ହେବାର ଦେଖିଲେ ବିଶ୍ୱାସ ହୁଏ ନାହିଁ ଯେ ସିମ୍ପାଞ୍ଜୀ ଆଫ୍ରିକା ଜଂଗଲର ବନ୍ୟପ୍ରାଣୀ ନୁହେଁ—ଅବିକଳ ମଣିଷଟିଏ ।



# ମହୁଖାଇ ଚଢ଼େଇ

**ମ**ହୁକୁ କିଏ ଭଲ ନ ପାଏ । ଆମ ଗାଁ ଗହଳରେ କାହାଣୀଟିଏ ଏବେବି ଲୋକମୁଖରେ ବିଞ୍ଚରିହୁଛି 'ଦେବତା ଯାକରେ କାଳିଆ ମିଠା; ସବୁଠୁ ମିଠା ମହୁ । ଟୋପିଏ ପଡ଼ିଲେ ଓଠ ଜିଭ ମିଠା, ବିରଜିବ କିଏ କହୁ' ଫୁଲ ରାଇଜ ଭୂସ୍ୱର୍ଗ କାଶ୍ମୀରରେ ଡୋଗ୍ରୀ ଭାଷାରେ ଏହି 'ମହୁପାଇଁ କଳି' ସମ୍ପର୍କରେ ସୁନ୍ଦରଲୋକ କଥାଟିଏ ଅଛି—ତାହା ହେଉଛି ଏହିଭଳି । ଥରେ ପଞ୍ଚାଏ ଚଢ଼େଇ ବାଟହୁଡ଼ି ଫୁଲ କ୍ଷେତରେ ପଶିଗଲେ । ଫୁଲ କେଶରରେ ଥଣ୍ଟ ମାରୁ ମାରୁ ମହୁର ସ୍ୱାଦ ପାଇଗଲେ । ତା'ପରେ ମହୁ ପ୍ରିୟ ସେଇ ଚଢ଼େଇ ଲୁଚିଛପିରେ ମଝିରେ ମଝିରେ ଫୁଲରସ ପାଇଁ ଫୁଲ କ୍ଷେତରେ ଚରି ଲାଗିଲେ । ଏ କଥା ଦେଖି ମଧୁପାୟୀ ଭ୍ରମର ଓ ମଧୁପମାନେ ସମ୍ମିଳିତ ଭାବେ ମହୁଖିଆ ସେଇ ସବୁ ଅନୁପ୍ରବେଶକାରୀ ଚଢ଼େଇଙ୍କୁ ତଡ଼ିବାକୁ ଲାଗିଲେ । କଳି ଲାଗିଲା । ଶେଷରେ ସେମାନେ ମିଶି ଏହାର ସମାଧାନ ପାଇଁ ଯାଇ ସୃଷ୍ଟିକର୍ତ୍ତା ସ୍ୱୟଂ ବ୍ରହ୍ମାଙ୍କ ପାଖରେ ହାଜର ହେଲେ । ବ୍ରହ୍ମା ସେମାନଙ୍କ କଳିର କାରଣ ଶୁଣିଲାପରେ କହିଲେ, "ଏହା ମୋ କାମ ନୁହେଁ । ତମେ ବିଷୟକର୍ମର ଅଧିକର୍ତ୍ତା ବିଶ୍ୱଦେବ ବିଶ୍ୱକର୍ମା ନ ହେଲେ ମଧୁରିପୁ ବନମାଳୀଙ୍କ ପାଖକୁ ଯାଅ ।"

ବିଶ୍ୱକର୍ମା ମହୁ ପାଇଁ ସେମାନଙ୍କ କଳିତକରାଳ କଥା ଶୁଣି କହିଲେ— ପକ୍ଷୀ ଜଗତରେ କିଏ କି କାମ କରିବ ମୁଁ ସେ କଥା ବୁଝେ । କାରିଗରୀ, ଦରଜୀ, କାଠୁରିଆ, ମାଛଧରାଳି, ମଇଳା ସଫାକାରୀ (ଶାଗୁଣା), ସ୍ୱେର (କାଉ) ଧନ ଜଗୁଆଳି (କଜଳପାତି), ରାତିର ପ୍ରହରୀ (ପେଚା), ଶିକାରୀ (ଇଗଲଚିଲ) ଗାୟକ (ରବିନ), ତନ୍ତ୍ରୀ (ବାୟା), କଂସେଇ (ଶ୍ରାଇକ) ଏଇମିତି ଚଢ଼େଇଙ୍କ ଭିତରେ ମୁଁ କାମ ବାଣ୍ଟି ଦେଇଛି । କିଏ କଣ ଖାଇବ, ବିଶେଷକରି ଫୁଲ ମହୁ କଳିର ଅସଲ ଅଧିକର୍ତ୍ତା ହେଉଛନ୍ତି—ବନବିହାରୀ ମଧୁରିପୁ ସ୍ୱୟଂ ବନମାଳୀ । ତମେ ତାଙ୍କ ପାଖକୁ ଯାଅ; ତାଙ୍କ ବିନା ଏ ବିଷୟରେ ଆଉ

କାହାର କଛି କହିବାର ଅଧିକାର ନାହିଁ । ବିଚରା ଭଅଁର, ମହୁମାଛି ଓ ମହୁଖିଆ ପକ୍ଷୀ ବାଧହୋଇ ଶେଷରେ ବନମାଳୀଙ୍କ ପାଖକୁ ମୁହାଁଇଲେ ।



ବନମାଳୀ ଉଭୟ ପକ୍ଷଙ୍କଠାରୁ ଠିକନଖି ସବୁ ଶୁଣିଲା ପରେ କହିଲେ ଭ୍ରମର ଓ ମହୁମାଛି ଭଳି ମଧୁପ୍ରିୟ ପକ୍ଷୀ ପୁଷ୍ପରସ ପାନ ପାଇଁ ଅଧିକାର

ପାଇବ କିନ୍ତୁ ତିନୋଟି ସର୍ତ୍ତରେ । ସେ ସର୍ତ୍ତ ହେଉଛି—(୧) ମଧୁ ହରଣ କଲାବେଳେ ଫୁଲ ଉପରେ ଲଦିହୋଇ ଫୁଲକୁ ଯେଭଳି ଅଯଥା ଆଘାତ ଓ କଷ୍ଟ ଦେବନି । (୨) ମହୁ ପିଇବାବେଳେ ଫୁଲର ଅନିଷ୍ଟକାରୀ କୀଟପତଙ୍ଗଙ୍କୁ ତଡ଼ି ନଷ୍ଟ କରିବ ଓ ମହୁ ପିଇ ଗୋଟିଏ ଫୁଲରୁ ଆଉ ଫୁଲକୁ ଫୁଲରେଣୁ ଫିଙ୍ଗି ପରାଗ ସଙ୍ଗମରେ ସାହାଯ୍ୟ କରିବ । (୩) କେବଳ ନିଜେ ସୁଆଦିଆ ମହୁପିଇ ଭଲରେ ରହିଲେ ସବୁ କିଛି ଯୋଇଯାଏ ନାହିଁ । ଏଣୁ ପ୍ରଥମେ ଦୁନିଆର ସବୁକିଛି ଯେଭଳି ମଧୁମୟ ହେଉ—ଋଗ୍‌ବେଦର ପଞ୍ଚମ ମଣ୍ଡଳର ମଧୁମନ୍ତ୍ର ସୂକ୍ତଟି ମିଠାସ୍ୱରରେ ଗାଉଥିବ ।

ମହୁଖୋଜା ଏହି ପକ୍ଷୀର ଜୀବନକାଳ ଦଶରୁ କୋଡ଼ିଏ ବର୍ଷ ଭିତରେ ସୀମିତ । ଅଣ୍ଡିରା ମହୁଖାଇ ଚଢ଼େଇର ଦେହର ରଙ୍ଗ ଚମତ୍କାର । ଅଥଚ ମାଈ ଚଢ଼େଇ ଦେଖିବାକୁ ଫିକା ଅଳିଆ ରଙ୍ଗର । ମାଈ ଚଢ଼େଇର ରଙ୍ଗ ଋତୁ-ଭେଦରେ ବଦଳେ, ହେଲେ ଅଣ୍ଡିରାର ରଙ୍ଗ ସେମିତି ବଦଳିଲା ଭଳି ଜଣାପଡ଼େ ନାହିଁ । ମାଈ ଚଢ଼େଇର ବର୍ଣ୍ଣ ସବୁଜ ବାଦାମୀ ଏବଂ ଅଣ୍ଡିରାର ପର କଳା ଧାତୁ ରଙ୍ଗର । ଏହା ଝଲମଲ ଓ ଉଜ୍ଜ୍ୱଳ ସୂର୍ଯ୍ୟାଲୋକରେ ଗ୍ଲବଗ୍ଲବଲ ଦିଶେ । ଏମାନେ ଉଜ୍ଜ୍ୱଳ ସୂର୍ଯ୍ୟ କିରଣରେ ଦ୍ରୁତ ସବୁଜପତ୍ର ଓ ରଙ୍ଗୀନ ଫୁଲଭରା ଇଲାକାରେ ବସିଥିଲାବେଳେ ଶତ୍ରୁର ଆଖିକୁ ଝଲସାଇ ଦିଅନ୍ତି । ଶତ୍ରୁ ଠିକ୍ ଭାବରେ ଏ ଜାତୀୟ ଚଢ଼େଇକୁ ଠାବ କରିପାରେ ନାହିଁ । ଏମାନଙ୍କ ଭଳି ସୂର୍ଯ୍ୟପକ୍ଷୀ (SUN BIRD) ପୁଷ୍ପରସ ମଧୁ ପିଏ ଓ କେହି କେହି ତାକୁ ମହୁଖାଇ ଚଢ଼େଇ ବୋଲି ଭୁଲରେ କହନ୍ତି । ସୂର୍ଯ୍ୟପକ୍ଷୀର ଥଣ୍ଟ ଖୁବ୍ ଲମ୍ବା, କିନ୍ତୁ ମହୁଖାଇ ଚଢ଼େଇର ଥଣ୍ଟ ତା'ଠାରୁ ଛୋଟ ଓ ଈଷତ୍ ବଙ୍କାଳିଆ । ଫୁଲ ବାହାରୁ ଥାଇ ଥଣ୍ଟ ଭରି କେଶରରୁ ମଧୁ ଶୋଷେ । ସେତେବେଳେ ଦୁଇ ଡେଣା ମୁଦି ଦେଇଥାଏ ଓ ମଝିରେ ମଝିରେ ହାଲକା ଗୁଞ୍ଜନ କରେ । ଭାରତୀୟ ମହୁଖିଆ ଚଢ଼େଇ ସାଧାରଣତଃ ତିନି ଉପଜାତିର, ସେମାନେ ହେଲେ (୧) ଛୋଟ ସାଗୁଆ ମହୁଖିଆ, (୨) ନୀଳଲଞ୍ଜିଆ ମହୁଖିଆ ଏବଂ (୩) ମୁକୁଟ ମୁଣ୍ଡିଆ ମହୁଖିଆ । ଖୋଲା ଜାଗା, ଫୁଲଭରା ଜଙ୍ଗଲ ଓ କ୍ଷେତରେ ହଳହଳ ମଝିରେ ମଝିରେ ଏମାନେ ଦେଖାଯାଆନ୍ତି । ବେଳେ ବେଳେ ଫୁଲ ଭିତରର ଅନିଷ୍ଟକାରୀ କୀଟପତଙ୍ଗଙ୍କୁ ଏମାନେ ମାରି ଖାଇ ଯାଆନ୍ତି ।

ଅଣ୍ଡିର ଚଢ଼େଇର ମଦତ ନନେଇ ମାଈ ମହୁଖାଇ ବସା ବାନ୍ଧେ ଓ ଏ ବସାର ଅଗଣା ଥାଏ । ମଞ୍ଜି, ଝୁଲୁବା କାଗଜ, ପ୍ରଜାପତି ଡେଣା, କୁନ୍ନକୁନ ଶୁଖିଲା ପତ୍ର, ଫୁଲ ପାଖୁଡ଼ା ଆଦି ଏକପ୍ରକାର ରେଶମୀ ଅଠାଳିଆ ସୂତାରେ ବୁଣା ହୋଇଥାଏ । ଏହି ପକ୍ଷୀ ଥରକେ ଯୋଡ଼ିଏ ଅଣ୍ଡା ଦିଏ ଓ ଅଣ୍ଡା ଉଷୁମାଇ-ବାକୁ ଚଉଦ ଦିନ ଲାଗେ । ଅଣ୍ଡା ୧୪ ଦିନରେ ଫୁଟେ; ହେଲେ ଆଖି ଫିଟୁ ଫିଟୁ ପନ୍ଦର ଦିନ ଲାଗେ । ଆମେ ନ ବୁଝିଲେ କଣ ହେଲା—ମହୁଖିଆ ଚଢ଼େଇର ପରିଭାଷା ବା କାକଳି ଅନେକାଂଶ ନିଆରା । ମଝିରେ ମଝିରେ ଏ ଚଢ଼େଇ 'ଟିଉ ଟିଉ ଟିଉ-ଟିଟ୍-ଟିଟ୍' ଲହରୀ ଲଗାଇ ଗୀତ ଗାଏ । ବର୍ଷର ଅନ୍ୟ ସମୟ ତୁଳନାରେ ବସନ୍ତ ଓ ଗ୍ରୀଷ୍ମଋତୁ ଆରମ୍ଭରେ ଫୁଲ ମହୁପ୍ରିୟ ଏହି ବିହଗର କାକଳି ଅଧିକ ଜୋର ଓ ମଧୁର ଶୁଭେ । ସଙ୍ଗମ ସମୟରେ ନିଜ ଇଲାକାର ସବୁଠୁ ଉଚା ଗଛଡାଳରେ ଅଣ୍ଡିର ମହୁଭୋଜୀ ପକ୍ଷୀ ବସେ ଓ ଲଗାତର ଲହରିଆ ଗୀତ ସୁର ଛୁଡ଼େ ଓ ସିଟି ମାରେ । ମାଈ ଚଢ଼େଇ ଆକର୍ଷିତ ହୋଇ ହାଜର ହେଲେ ସଙ୍ଗମ କାର୍ଯ୍ୟ ସମ୍ପାଦିତ ହୁଏ । ଏମାନଙ୍କ କାମ ଓ ସମୟଜ୍ଞାନ ଲକ୍ଷ୍ୟ କରିବାର କଥା । ନିର୍ଦ୍ଦିଷ୍ଟ ସମୟରେ ଘରକାମ, ପିଲା ଚଢ଼େଇଙ୍କ ହେପାଜତ, ଲାଳନ ପାଳନ, ମହୁ ସଂଗ୍ରହ, ବିଶ୍ରାମ ଆଦିରେ ଏମାନେ ଲିପ୍ତଥାଆନ୍ତି । ସଞ୍ଜ ନଇଁବା ପୂର୍ବରୁ ଏମାନେ ଦଳଗତ ମେଳଣରେ ଯୋଗ ଦିଅନ୍ତି । ସେଠାରେ ଭଲମନ୍ଦ, ହାନିଲାଭ, କଳିକଜିଆ ସବୁକଥା ପଡ଼େ ଓ ତୁଟେ ମଧ୍ୟ । ଦୁଃଖର କଥା, ପରିବେଶ ନଷ୍ଟ ହେତୁ ଏବେ ଏମାନଙ୍କ ବଂଶ ଦ୍ରୁତ ଗତିରେ ହ୍ରାସପାଇବାରେ ଲାଗିଛି । କଥାରେ କହନ୍ତି—"ନଦୀ ହୋଇ ଯେବେ ନ ବହେ ଜଳ; ତରୁଲତା ଯଦି ନ ଧରେ ଫୁଲ—ମଧୁପାୟୀ ପକ୍ଷୀ ଓ ମଧୁଲିଟର କି ଥଳକୂଳ ??" ମଧୁପ୍ରିୟ ପକ୍ଷୀର ନୈସର୍ଗିକ ସୌନ୍ଦର୍ଯ୍ୟ ଓ ଜୀବନଧାରା ଯେଉଁଭଳି ଅନନ୍ୟ, ସେହିଭଳି ମର୍ମସ୍ପର୍ଶୀ । ଏହି ମଧୁପ୍ରିୟ ପକ୍ଷୀର ଜୀବନଧାରା ଶୁଭ ଓ ମଧୁମୟ ହେଉ—ଏତିକି କାମନା !



# ରୁଷିଆ ର ସାଇବେରିଆର ଜାଗୁଆର – ବରଫ ଚିତା

ଓଡ଼ିଆରେ ଢଗଟିଏ ଏବେ ବି ଲୋକମୁଖରେ ବଞ୍ଚି ରହିଛି । ତାହା ହେଉଛି—

'ବାଘ ନ ଦେଖିଲେ ବିଲେଇ ଦେଖ,
ଖଣ୍ଡା ନ ଦେଖିଲେ ବଣିଆ ଦେଖ ।'

ଏହା ମିଛ ନୁହେଁ । ବାଘ, ଚିତାବାଘ ଓ ଜାଗୁଆର ଏମାନେ ବିଲେଇ ଗୋଷ୍ଠୀର ବୃହତ୍ ସଂସ୍କରଣ । ସାରା ଦୁନିଆର ଯେତେ ଜାତିର ବାଘ ଅଛନ୍ତି, ସେମାନେ ମୁଖ୍ୟତଃ ସାତୋଟି ଶ୍ରେଣୀର । ହେଲେ ଆମ ଦେଶର ବାଘ ମୁଖ୍ୟତଃ ୨ଟି ଉପଜାତିର । ଗୋଟିଏ ମହାବଳ ଆଉ ଅପରଟି ଚିତାବାଘ ।

ଭାରତୀୟ ଚିତାବାଘ ଆପଣାର ରହଣି ଭେଦେ ୨ଟି ଉପଜାତିର—ଗୋଟିଏ ଭୂଇଁଚିତା, ଆରଟି ବରଫ ଚିତା । ଭୂଇଁଚିତାଙ୍କ ତୁଳନାରେ ବରଫ ଚିତାଙ୍କ ସଂଖ୍ୟା ନ୍ୟୁନ । ଏବେ ସେମାନଙ୍କ ବଂଶହ୍ରାସ ପାଇବା ଉପରେ ବୋଲି ବିଶ୍ୱ ବ୍ୟାଘ୍ରସଂରକ୍ଷଣ ସଂସ୍ଥା ପକ୍ଷରୁ ସୂଚିତ । ଏବେ କେବଳ ରୁଷର ବୈକାଲ ହ୍ରଦ, ତାସ୍କେଣ୍ଟ, ମଙ୍ଗୋଲିଆର ଉଲାନ୍‌ବେଟର, ଚୀନର ସିଏନସାନ, ଆଫଗାନିସ୍ଥାନର ହିନ୍ଦୁକୁଶ, ନେପାଳ, ତିବ୍ବତର ଲାସା ଏବଂ ହିମାଳୟ ଓ ପଶ୍ଚିମ ପାକିସ୍ଥାନ (କାଶ୍ମୀରର ମାଖୋର) ଉପତ୍ୟକାରେ କାଁ ଭାଁ ଦେଖାଯାନ୍ତି । ବସବାସ କରୁଥିବା ଚରଭୂଇଁ ଓ ସେ ଅଞ୍ଚଳର ଜଳବାୟୁ ଭେଦେ ଚିତାର ରଙ୍ଗ ଭିନ୍ନ ହୁଏ । କେଉଁଠି ଚିତା ଗାଢ଼ କଳା ରଙ୍ଗର, କେଉଁଠି ବାଘ ରଙ୍ଗର ତ କେଉଁଠି ପୁଣି କଳା ପଟି ପଟି ଭିତରେ ବରଫ ଭଳି ଧୋବ ଧୋବଳିଆ ରଙ୍ଗର । ବରଫ ଚିତାର ଜୀବନକାଳ ପ୍ରାୟ ୨୦।୨୨ ବର୍ଷରେ ସୀମିତ । ମାଈ ବରଫଚିତା ରଜୋବତୀ ହେଲେ ତା ଦେହରୁ ଏକ ପ୍ରକାର ଗନ୍ଧ ବାହାରେ

ଓ ସେ ହେଣ୍ଟାଳ ଘୁଡ଼େ । ଏହା ସହବାସର ପୂର୍ବ ସୂଚନା ପଟ । ଅଣ୍ଡିରି କରଫ ଚଢା ସହ ସହବାସ ପରେ ବାଘୁଣୀ ଗର୍ଭବତୀ ହୁଏ ଓ ପ୍ରାୟ



୯୦ ଦିନ ଭିତରେ ଛୁଆ ଦିଏ । ଖୁବ୍ ବେଶିହେଲେ ୨।୩ଟି ଓ ;ସେ ଛୁଆର ଆଖି ୭ ଦିନରେ ଫିଟେ । ୩/୪ ବର୍ଷ ଭିତରେ ସେ ଛୁଆଶଚାପାରିବାର ହୋଇଯାଏ । କଥାରେ କୁହନ୍ତି—"ବାଘର ପିଲା ବାଘ; ନାଗର ପିଲା ନାଗ ।"

ବରଫାଚ୍ଛନ୍ନ ପାହାଡ ବା ଶୃଙ୍ଗଦେଶ—ବରଫ ଚିତାର ବାସସ୍ଥଳୀ । ଭୂଇଁଠାରୁ ବେଳେବେଳେ ଦେଢ଼ ହଜାର ଫୁଟ ଉଚ୍ଚ ଦେଶରେ ବରଫଚିତାର ପାଦଚିହ୍ନ ସବୁ ଶିକାରୀ ଠାବକରି ଚାଲୁଥିବା ହୋଇଛନ୍ତି । ସାଧାରଣତଃ ବରଫଚିତା ଆରେହଣ କୁଶଳୀ ଓ ସୁଦକ୍ଷ ଶିକାରୀ । ନିଜର କଡ଼ୁଆ କସରା ପରସ୍ରା ଚିହ୍ନରେ ବରଫ ଚିତା ଆପଣା ଇଲାକାର ଚିହ୍ନଟ କରିଥାଏ । ତା' ଭିତରକୁ ଆଉ କେହି ପଶି ଆସିଲେ ସେ ତାକୁ ଆକ୍ରମଣ କରେ ।

ସାଧାରଣତଃ ହମ୍ବର, ହରିଣ, ଘୁଷୁରି, ବାର୍ହା, ଗାଈ, ଘାଳଗାଈ, ପାହାଡ଼ିଆ ଛେଳି, ବାଛୁରି ଆଦି ବରଫ ଚିତାର ପ୍ରିୟ ଆହାର । ବେଳେ ବେଳେ ବରଫ ପାହାଡ଼ରୁ ତଳ ଅଞ୍ଚଳକୁ ଓହ୍ଲାଇଆସି ଶିକାର କରି ପୁଣି ନିଜ ଜନ୍ମଭୂଇଁକୁ ବିଜୁଳିବେଗରେ ଫେରିଯାଏ । ଆଉ ବାଘଙ୍କଠାରୁ ଚିତା ମଣିଷ ପାଇଁ ବିପଦପୂର୍ଣ୍ଣ—ଥରେ ବରଫଚିତା ମଣିଷ ରକ୍ତ-ମାଂସ ଚାଖିଲେ—ସେ ମଣିଷଖିଆ ହୋଇଯାଏ ଓ ବେପରୁଆହୋଇ ମଣିଷ ମାଉଁସ ପାଇଁ ବାଗ୍ର ହୋଇଯାଏ ବୋଲି ବିଶ୍ୱବିଖ୍ୟାତ ବାଘ ଶିକାରୀ ଜିମ କରବେଟଙ୍କ "ମେନ ଇଟର ଅଫ କୁମାୟୁନ" ବହିରୁ ସୁସ୍ପଷ୍ଟ । ଗଛ ଚଢ଼ିବାରେ ବରଫଚିତା ଅଦ୍ବିତୀୟ । ଗଛରେ କୁଦେ, ଡ଼ିଏଁ ଓ ଏଭଳି ଶୁଏ ଯେ ଖସିବାର ସମ୍ଭାବନା କେବେହେଲେ ନ ଥାଏ । ବଡ଼ିଆଳ ବରଫ ଚିତାର ଓଜନ ପ୍ରାୟ ପାଖପାଖି ୧୦୦ ପାଉଣ୍ଡ । ବରଫ ଚିତାର ଆଖି ଖୁବ୍ ତେଜସ୍ୱୀ । ଅନ୍ୟ ଚିତାଠାରୁ ମାଈ ଚିତାର ଲାଞ୍ଜ ଅପେକ୍ଷାକୃତ ଲମ୍ବାଳିଆ, ଦେହ ପାଉଁଶିଆ ଖୁବ୍ ସଉକିନିଆ । ଧଳା ଧୂସର ପଟାପଟାଦାଗ ଓ ତା' ମଝିରେ କଳାଛିଟିକା ଦାଗ ବରଫ ଚିତାକୁ ଆତ୍ମଗୋପନ କରିବାରେ ଖୁବ୍ ସାହାଯ୍ୟ କରିଥାଏ ।

ଧଳାବାଘଙ୍କ ଭଳି ବରଫଚିତାଙ୍କର ସଂଖ୍ୟା ଖୁବ୍ ବିରଳ ଓ ଦାମ୍ ଖୁବ୍ ଚଢ଼ା । ଏହାର ଚମଡ଼ା ସବୁ ବାଘଛାଲଠାରୁ କୌତୁକିଆ ଓ ମୂଲ୍ୟବାନ । ଏଣୁ ବରଫଚିତା ଛାଲ ଆନ୍ତର୍ଜାତିକ ବଜାରରେ ଖୁବ୍ ଚଢ଼ା ଦରରେ ବିକାହୁଏ । ଚିତାର ଶିକାର ଓ ଖାଇବା ରୀତି ନିଆରା । ମହାବଳ

ବାଘ ଅନ୍ତନାଳୀ ଓ ପୃଷ୍ଠାର୍ଦ୍ଧ ଖାଏନା ଅଥଚ ବରଫ ଚିତା ସବୁ କିଛି ଖାଇ ସାଫ୍ କରିଦିଏ । ବରଫ ଚିତା ନିଃସଙ୍ଗ ଶିକାରୀ ।

ବିଶ୍ୱର ଏଭଳି ଏକ ଦୁର୍ଲଭ ଓ ବିରଳ ବନ୍ୟପ୍ରାଣୀର ବଂଶ ବିଲୋପ ବାସ୍ତବରେ ଏକ କ୍ଷୋଭର ବିଷୟ । ପରିବେଶ କ୍ଷୟ, ଜଙ୍ଗଲ ନାଶ ସମେତ ଚିତାର ଆହାର ଲୋପ ପାଉଥିବା ହେତୁ ବରଫଚିତାର ବଂଶକ୍ଷୟ ଘଟୁଅଛି । ସମ୍ପ୍ରତି ନ୍ୟୁୟର୍କ ଜିଓଲୋଜିକାଲ ସୋସାଇଟି ତଥା ରୁଷ ପ୍ରାଣୀ ସଂରକ୍ଷଣ ସଂସ୍ଥା ପକ୍ଷରୁ ବରଫଚିତାର ବଂଶରକ୍ଷା ଓ ସୁରକ୍ଷା ଉପରେ ପ୍ରାଧାନ୍ୟ ଦିଆଯାଉଥିବା ସୁଖର ବିଷୟ । କୃତ୍ରିମ ପ୍ରଜନନ ପ୍ରଚେଷ୍ଟା ସଫଳ ହେଲେ ଓ ବରଫଚିତା ଅଧ୍ୟୁଷିତ ଅଞ୍ଚଳ ଅଭୟାରଣ୍ୟ କରାହେଲେ 'ବରଫଚିତା'ର ବଂଶରକ୍ଷା ସହଜ ହେବ, ଏହି ଆଶା ଓ ଭରସାରେ ଅନେକେ ଆଶାୟୀ ।



# ଆଣ୍ଟାର୍କଟିକାର ଜୀବ – ପେଙ୍ଗୁଇନ

ପେଙ୍ଗୁଇନମାନଙ୍କର ଚରଭୂଇଁ ହେଉଛି ଆଣ୍ଟାର୍କଟିକା । ଯେଉଁଆଡ଼କୁ ଦୃଷ୍ଟି ଆଖିପାଇବ ନାହିଁ—ଖାଲି ବରଫ ଆଉ ବରଫ । ଯେମିତ ଥଣ୍ଡା ସେମିତ ଶୁଖିଲା । କେଉଁଠି ଜୀବନ ଥିଲଭଳି ମନେ ହୁଏନାହିଁ । ବିଶ୍ୱର ପବନର ନାଗୁଡିଆ ଘେର । ପୃଥିବୀର ସାରା ଦୁନିଆର ଲୋକେ ବ୍ୟବହାର କରୁଥିବା ପାଣିର ୭° ଭାଗ ଏଠାରେ ନଦୀ ବରଫ ପାଲଟିଯାଇଛି । ବହୁବର୍ଷଧରି ଏଠାରେ ମଣିଷର ପାଦ ପଡ଼ି ନ ଥିଲା । ଆଜିଠାରୁ ଠିକ ଶହେ ଅଠଷଠି ବର୍ଷ ତଳେ ୧୮୨୦ ମସିହାରେ ଆମେରିକା ଓ ବିଲାତର ଜଳ ଜାହାଜ ଉତ୍ତରମେରୁ ଅଞ୍ଚଳର ଏହି ଆଣ୍ଟାର୍କଟିକାକୁ ଠାବ କରିଥିଲା । ହେଲେ ବହୁକାଳ ଧରି ଆଣ୍ଟାର୍କଟିକା ବିଷୟରେ ବିଶେଷ କିଛି ତଥ୍ୟ ଜଣା ନ ଥିଲା ।



ସମୟ ବଦଳିବା ସଙ୍ଗେ ସଙ୍ଗେ ମଣିଷ କେବଳ ଏବେ ଚନ୍ଦ୍ରରେ ଓହ୍ଲାଇ ନାହିଁ, ବହୁ ଅଜଣା, ଅପରିଚିତ ଅଞ୍ଚଳକୁ ବଧାଘର କରି ସାରିଲାଣି । ଗତ ପଚିଶବର୍ଷ ଭିତରେ ଆଣ୍ଟା-ର୍କଟିକା ଅଭିଯାନପାଇଁ ଦେଶ ଦେଶ ଭିତରେ ସତେ ଯେଭଳି ଧୋଡ଼ାଦୌଡ଼ି ଲାଗିଛି । ଏଯାଏ ବିଶ୍ୱର ଯେଉଁ ୧୭ଟି ଦେଶ ଏହି କାମରେ ଆଗେଇଛନ୍ତି ସେମାନେହେଲେ— ଆମେରିକା, ଋଷିଆ, ଜାପାନ, ଫ୍ରାନ୍ସ, ଚୀନ, ଅଷ୍ଟ୍ରେଲିଆ, ଆର୍ଜେଣ୍ଟିନା, ବ୍ରାଜିଲ, ଜର୍ମାନ, ଭାରତ, ନିଉଜିଲାଣ୍ଡ, ପୋଲାଣ୍ଡ, ଦକ୍ଷିଣ ଆଫ୍ରିକା, ବିଲାତ, ଉରୁଗୁଏ ଏବଂ ଚିଲ୍ଲୀ । ଭୂତତ୍ତ୍ୱବିତ ଶ୍ରୀ ଏମ.

ଏ. କାଉଲଙ୍କ ନେତୃତ୍ୱରେ ଭାରତର ପଞ୍ଚମ ଅଭିଯାନକାରୀଦଳ ଏଠାରେ ୧୨୦ଦିନ ରହି ୧୯୮୬ ମସିହା ମାର୍ଚ୍ଚ ୧୪ ତାରିଖ ଦିନ ଫେରି ଆସିଥିଲେ । ଏହି ଦଳରେ ଅନ୍ୟମାନଙ୍କ ମଧ୍ୟରେ ଜଣେ ପକ୍ଷୀ ବିଜ୍ଞାନୀ ଥିଲେ । କିଛିଦିନ ତଳେ ତାଙ୍କୁ ମୁଁ ଦିଲ୍ଲୀରେ ଭେଟିଲିବେଳେ ପେଙ୍ଗୁଇନର ଚାଲିଚଳଣି ସମ୍ପର୍କରେ ସେ ଅନେକ ମଜା କଥା ବଖାଣି ବସିଲେ । ମୋର ଇଚ୍ଛା ହେଲା ପେଙ୍ଗୁଇନ ବିଷୟରେ ଏକା ମୁଁ ନୁହେଁ, ଆମ ଗେହ୍ଲା ପିଲାଏ ଜାଣିଲେ ଆହୁରି ଖୁସି ହୁଅନ୍ତେ ।

ପିଲାଏ, ତୁମେ ଜାଣିଥିବ—ଆଣ୍ଟାର୍କଟିକା ମହାଦେଶକୁ ଘେରି ରହିଛି ମହାସାଗର । ଏହାର ପଡ଼ୋଶୀଦେଶ ହେଉଛି ଅଷ୍ଟ୍ରେଲିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକା । ଆମ ଗାଁ ଗହଳରେ ବୁଦ୍ଧିପରୀକ୍ଷାପାଇଁ ଯେଉଁଭଳି କୁହୁକ ଧନ୍ଦା ଓ ଲୋକଗୀତ ରହିଛି, ଠିକ ସେଇଭଳି ଆଫ୍ରିକାରେ ଗୋଟିଏ ଲୋକଗୀତଟିଏ ଏବେ ବି ବଞ୍ଚିରହିଛି । ତାହା ହେଉଛି—

"ଉଡ଼ିପାରେ ନାହିଁ, ଚଢ଼େଇଟିଏ ଲଞ୍ଜରେ ଠିଆ ହୋଇ ଚାଲେ । ମିଶାହୋଇ ପାଣିରେ ଜାହାଜ ଭଳି ଭାସିଯାଏ । ଥଣ୍ଡାକୁ ଥଣ୍ଡା ଓ ବେକକୁ ବେକରେ ଘଷି ଅପରକୁ ବଧାଇ ଜଣାଏ; ବରଫ ରାଇଜ ରାଜା, ବର୍ଣ୍ଣିସିଏ କହିକ ପାରିବ ପିଲେ ସେ କିଏ ?" ଏହି କୁହୁକ ପ୍ରଶ୍ନର ଉତ୍ତର ହେଉଛି—"ଦକ୍ଷିଣମେରୁର କୁଇନ : ପେଙ୍ଗୁଇନ" । ଖାଲି ଆଣ୍ଟାର୍କଟିକା ନୁହେଁ ପୃଥିବୀରେ ମୋଟ ଅଠରଟି ଜାତିର ପେଙ୍ଗୁଇନ ଛଅଟି ଦଳଭୁକ୍ତ ଓ ସେମାନେ ମୁଖ୍ୟତଃ ଦକ୍ଷିଣ ଗୋଲାର୍ଦ୍ଧରେ ଦେଖାଯାଆନ୍ତି । କେହି କେହି ବରଫ ଖାଆନ୍ତି, ସମୁଦ୍ରର ମାଛ ଓ ପୋକଜୋକ ଖାଆନ୍ତି ମଧ୍ୟ । ହେଲେ ଲୁଣି ଓ ମିଠାପାଣି ସଭିଏଁ ପିଅନ୍ତି । ଏମିତି ପେଙ୍ଗୁଇନ ଅଛନ୍ତି ଯେଉଁମାନେ କି ଖାଲି ପାଣିରେ ଅନେକ ଦିନ ଧରି ଅନାୟାସରେ ରହିବାରେ ପାରନ୍ତି । ବରଫଗୁଡ଼ାଇ ହୋଇଥିବା ଭୂଇଁ ଉପରେ ମଣିଷ ଭଳି ଏମାନେ ସିଧା ଚାଲିଲାବେଳେ, ଦେଖିଲେ ମନେହୁଏ ଶାନ୍ତଶିଷ୍ଟ ମଣିଷ ଛୁଆ ଏମାନେ । ଦେଖିବାକୁ ପେଙ୍ଗୁଇନ କଳା ଓ ଧଳା ଦୁଇ ରଙ୍ଗର, ଅଥଚ ବେଉଣାଚ ପର ସବୁ ନାନା ରଙ୍ଗରେ ଶୋଭାପାଉଥାଏ । ବଡ଼ନ୍ତା ପେଙ୍ଗୁଇନର ଆଖି ଯେମିତି

ଲମ୍ବା ସେମିତ ସରୁ ଓ ତଳକୁ ବଙ୍କା ହୋଇଥାଏ । ଦେହରେ କାଁ ଭାଁ କମଳା ରଙ୍ଗର ଛାପ ଖୁବ୍ ସୁନ୍ଦର ଦିଶେ । ହଳଦି ଆଖିଯୁକ୍ତ ପେଙ୍ଗୁଇନ-ମାନଙ୍କର ଥଣ୍ଟ ଖୁବ ବଡ଼ । ମୁଣ୍ଡରେ ମୁକୁଟ ଭଳି ହଳଦି ଓ କଳାରଙ୍ଗ ମିଶା ଛାପଥାଏ । ବସାକୁ ଘାସ ଓ ଦଳରେ ଘୋଡ଼ାଇ ରଖିଥାନ୍ତି ଏମାନେ । ଭୂଇଁରେ ଚାଲିବାରେ ପେଙ୍ଗୁଇନ ଯେଭଳି ପାରଙ୍ଗମ, ପାଣିରେ ପହଁରିବାରେ ତା'ଠାରୁ ବେଶି ପାରଙ୍ଗମ । ପେଙ୍ଗୁଇନର ପହଁରିବାର ବେଗ ଘଣ୍ଟା ପ୍ରତି ୩୬କିଲୋମିଟର । ସମୁଦ୍ର ଭିତରେ ଖାଦ୍ୟ ଖୋଜିଲାବେଳେ ଏମାନେ ୫ରୁ ୧୦୦ମିନଟ ବୁଡ଼ି ରହିଲେ ବି କେବେ ଅଣନିଶ୍ୱାସୀ ହୁଅନ୍ତି ନାହିଁ ।

ଭାବିଲେ ଆଶ୍ଚର୍ଯ୍ୟ ଲଗେ—ମଣିଷ ପକ୍ଷରେ ଅସହ୍ୟବୋଧ ହେଉଥିବା ଅତି କାଲୁଆ ଥଣ୍ଡା ପାଣିରେ ଏମାନେ କିପରି ବଞ୍ଚିବାରେ ସମର୍ଥ । ଏହାର ରହସ୍ୟ ହେଉଛି—ପେଙ୍ଗୁଇନ ମଥାରେ ଏଭଳି ଏକ ଉତ୍ତାପ ନିୟନ୍ତ୍ରକ ସ୍ୱୟଂକ୍ରିୟ ଯନ୍ତ୍ର ଈଶ୍ୱର ଖଞ୍ଜି ଦେଇଛନ୍ତି ଯେ ଦେହ ନସହି ପାରିଲା ଭଳି ଅସହ୍ୟ ଥଣ୍ଡାହେଲେ ଏହି ଯନ୍ତ୍ରଟି ନିଜେ ନିଜେ ପେଙ୍ଗୁଇନର ସାରା ଦେହକୁ ଆବଶ୍ୟକମତେ ଉଷୁମ କରେ ; ଅଥଚ ଅସହ୍ୟ ଗରମ ପଡ଼ିଲେ ପୁଣି ପେଙ୍ଗୁଇନର ଝାଇପୋଟା ଦେହକୁ ଦରକାର ଅନୁଯାୟୀ ଧୀରେ ଧୀରେ ଶୀତଳ କରିଦିଏ । ଏହାଛଡ଼ା ୨।୩ ସେଣ୍ଟିମିଟର ବହଳର ଚର୍ବି କମ ଉତ୍ତାପରେ ପେଙ୍ଗୁଇନକୁ ବଞ୍ଚିବାରେ ଅନେକ ପରିମାଣରେ ସାହାଯ୍ୟ କରେ ।

ମାଈ ପେଙ୍ଗୁଇନ ସାଧାରଣତଃ ଫେବୃୟାରି-ମାର୍ଚ୍ଚ ଭିତରେ ଗୋଟିଏ ବା ଦୁଇଟି ଅଣ୍ଡା ଦିଏ ଓ ସେହି ଅଣ୍ଡାର ଓଜନ ମାଆ ଓଜନର ଶତକଡ଼ା ୨ରୁ ୪ଭାଗ ଓଜନରେ ସୀମିତ ଥାଏ । ଅଣ୍ଡା ଉଷୁମେଇବାପାଇଁ ୩।୪ ମାସ ସମୟ ଲାଗେ ଓ ବଡ଼ ପେଙ୍ଗୁଇନଙ୍କ ଭଳି ଚରିବୁଲି ସବୁକାମ ଆପେ ଆପେ କରିବାପାଇଁ ଶାବକ ପେଙ୍ଗୁଇନକୁ ପ୍ରାୟ ବର୍ଷେ ଲାଗିଯାଏ । ଏହି ସମୟ ଭିତରେ ସେମାନଙ୍କୁ ବାପା ମାଆ ଉଭୟମିଶି ଖୁଆନ୍ତି ଓ ତାଙ୍କର ଯତ୍ନ ନିଅନ୍ତି ।

ପେଙ୍ଗୁଇନମାନେ ଯେମିତି ସାହସୀ ସେମିତି ମେଳାପି । ଥଣ୍ଟ ଓ ଡେଣା ସାହାଯ୍ୟରେ ଆକ୍ରମଣକାରୀ ମଣିଷକୁ ଏମାନେ ଘାଏଲ କରି ପକାନ୍ତି । ଦଳଗତ ଜୀବନ ଯାପନ ଏମାନଙ୍କର ବଂଶ ପରମ୍ପରା । ଦଳର ସବୁଠାରୁ ବଡ଼ ଅଣ୍ଡିରା ପେଙ୍ଗୁଇନ ସମ୍ରାଟ, ରଜା । ଠିକ୍ ସେମିତି ଦଳର ସବୁଠୁ ବଡ଼ ମାଈ ପେଙ୍ଗୁଇନ ସାମ୍ରାଜ୍ଞୀ, ରାଣୀ । ଏମାନେ ଦଳରସବୁ ପେଙ୍ଗୁଇନଙ୍କ ଠାରୁ ସମ୍ମାନ ଓ ଆଦର ପାଆନ୍ତି । ପେଙ୍ଗୁଇନମାନେ ପ୍ରାୟତଃ ଖୁବ୍ ଶାନ୍ତଶିଷ୍ଟ ସ୍ୱଭାବର । ଅଣ୍ଡିରା ପେଙ୍ଗୁଇନ ବସାବାନ୍ଧେ, ମାଈ ପେଙ୍ଗୁଇନ ଘରକରଣା କାମ କରେ । ଯେମିତି ବୁଦ୍ଧିବାଜ ସେମିତି ମଉଜମଜଲିସ ଓ ଖେଳପ୍ରିୟ । ପାଣିକୁ ଡିଆଁମାରିବା ଓ ସନ୍ତରଣ କୌଶଳରେ ପେଙ୍ଗୁଇନ ଆଉ ପକ୍ଷୀଙ୍କଠାରୁ ଅଧିକ ଚାଲାକ । ବିଶେଷ କରି ଖରାଦିନେ ବରଫ ତରଳିବାକୁ ଆରମ୍ଭ କଲାକ୍ଷଣି ଏମାନେ ବରଫଡ଼ଙ୍କା କୁଦ ଓ ମୁଣ୍ଡିଆ ଉପରେ ରହନ୍ତି । ପାଣି ତଳେ ସମୁଦ୍ରର ରାକ୍ଷସ ଅଛି କି ନାହିଁ, ତଉରେଇ ଦଳମୁଖିଆ ଇସାରା ଦେଲାପରେ ପରକୁ ପର ପେଙ୍ଗୁଇନମାନେ କୁଦାମାରନ୍ତି ପ୍ରାୟ ୫ ଫୁଟ ଉଚ୍ଚାମୁଣ୍ଡିଆ ଉପରୁ । ପାଣିରେ ପହଁରିଲା ବେଳେ ଜଣାଯାଏ ସତେ ଯେମିତି ଗୋଟିଏ ଉଡ଼ନ୍ତା ବୋଟ ନୀଳ ଦରିଆର ପାଣି କାଟି କାଟି ଆଗେଇଯାଉଛି । ମାଛ, କଙ୍କଡ଼ା, ପୋକଜୋକ ନିଜେ ଖାଇବା ସଙ୍ଗେ ସଙ୍ଗେ ଶ୍ରେଷ୍ଠ ଛୁଆଙ୍କ ପାଇଁ କିଛି କିଛି ଆହାର ଧରି ଉପରକୁ ଫେରନ୍ତି । ସେମାନଙ୍କ ଚାଲିଚଳଣି ମଣିଷଭଳି ଭାରି ସୁଧାର ଓ କୌତୁକିଆ ମଧ୍ୟ । ଆଖିରେ ନ ଦେଖିଲେ ବିଶ୍ୱାସ ହେବନି ସହଜରେ । ପହଁରିବା ବାଟରେ ବଡ଼ ବରଫ ଖଣ୍ଡ ଭାସି ଆସିଲେ ପେଙ୍ଗୁଇନଙ୍କ ହସଖୁସି କହିଲେ ନସରେ । ଆନନ୍ଦରେ ତା' ଉପରେ ଚାଲନ୍ତି ଓ ଆଉ କେତେକ ସେହି ବରଫ ଖଣ୍ଡକୁ ସ୍ରୋତର ବିପରୀତ ଦିଗକୁ ଠେଲିବାରେ ଲାଗନ୍ତି । ଠେଲିଲାବେଳେ ପେଙ୍ଗୁଇନ ହାଲିଆ ହୋଇଗଲେ ସେମାନେ ପାଣିରୁ ଉଠି ସେଇ ବରଫ ଭେଳା ଉପରେ ବସନ୍ତି ଓ ଏଥର ବସିବା ପେଙ୍ଗୁଇନଙ୍କର ଠେଲିବା ପାଳି ପଡ଼େ । ଏହି ଖେଳ ବରଫ ମୁଣ୍ଡା ପାଣିରେ ତରଳି ମିଶିଗଲା ଯାଏ ସେମିତି ଚାଲିଥାଏ ।

ପେଙ୍ଗୁଇନମାନେ ଅଜଣା ମଣିଷକୁ ପାଖଛଡ଼ା ଦେଲେ ବି ଜାଣିଲା ପରେ ଆଉ ଡରନ୍ତି ନାହିଁ । ସବୁକଥା ଜାଣିବାରେ ପେଙ୍ଗୁଇନର ଯଉକ

କିଛି କମ ନୁହେଁ । ଆଣ୍ଟାର୍କଟିକାରେ ଗବେଷଣା କେନ୍ଦ୍ର ଓ ଅଭିଯାନର ଲଗିଥିବା ଦେଶ ବିଦେଶର ଲୋକେ କ'ଣ କରୁଛନ୍ତି ତାହା ଅନତିଦୂରରୁ ଦଳ ଦଳ ହୋଇ ଘଣ୍ଟା ଘଣ୍ଟା ଦେଖିବାରେ ସେମାନେ ଦେଖାଯାଆନ୍ତି । କେତେକ ଖାଲି ତମ୍ବୁ ଭିତରକୁ ଓ ମଣିଷ ପାଖକୁ ଆସି ମଣିଷ ହାତରୁ ନିଃସଂକୋଚରେ ଖାଇବା ଜିନିଷନେବାର ଦେଖାଗଲାଣି । ଆମ ଦେଶରୁ ଆଣ୍ଟାର୍କଟିକା ଅଭିଯାନ ଦଳରେ ଯାଇଥିବା ପକ୍ଷୀ ବିଜ୍ଞାନୀ ବନ୍ଧୁ ୧୨୦ ଦିନ ରହଣି ଭିତରେ ପୋଷା ମନାଇଥିବା ଓ ମଣିଷ ପୋଷାକ ପିନ୍ଧି ବୁଲୁଥିବା ପେଙ୍ଗୁଇନଟିର ଆଲୋକ ଚିତ୍ର ଦେଖି ମୋର ମନେହେଲା ଅନ୍ୟ ପକ୍ଷୀମାନେ ବିହଙ୍ଗମ ହେଲେ ପେଙ୍ଗୁଇନ ହେଉଛି ଆଣ୍ଟାର୍କଟିକାର କୁଇନ ।



# ସାମୁଦ୍ରିକ ଓଧ

ଆମ ଗାଁ ଗହଳରେ ଗୋଟିଏ ନଣ୍ଡା ଏବେବି ଲୋକ ମୁହଁରେ ବଞ୍ଚି ରହିଛି । ତାହା ହେଉଛି—

"ନଈପାଣି ଗଲା କାହାକୁ
କିଏ ପଚାରୁଛି କାହାକୁ ?
ନଈ ସାରା ମାଛ ଖାଇଗଲା ଓଧ
ପାଣିନାହିଁ ଦେହେ ସରନାହିଁ ସାଧ ।

ନଈ ତୁଣ୍ଡୁଆ ଦଳ—

ଓଧ କଉଠିକି
କିଏ ସେ କଳିବ କଳ ।"

ଖାଲି ନଈ, ବଡ଼ ପୋଖରୀ ବା ହ୍ରଦରେ ଓଧ ଥାଆନ୍ତି ବୋଲି ଆମଭଳି ଅନେକଙ୍କର ଧାରଣା ଥିଲା ବହୁଦିନ ଧରି । ସମୁଦ୍ର ପାଣିରେ ଏମିତି ଓଧ ଥିବାକଥା ୧୭୪୧ ମସିହାରେ ଭିଟସବେରିଂ ତାଙ୍କର କାଲିଫର୍ଣ୍ଣିଆରୁ ଉତ୍ତର ଜାପାନ ନୌଯାତ୍ରାରେ ଯିବାବେଳେ ପ୍ରଥମେ ସାମୁଦ୍ରିକ ଓଧ **(SEA OTTER)** କୁ ଠାବ କରିଥିଲେ ।

ଏହି "ସାମୁଦ୍ରିକ ଓଧ" ଆମ ଦେଖୁଥିବା ଓଧଙ୍କଠାରୁ ନିଆରା । ଆକାରରେ ବଡ ଓ ଏହାର ଓଜନ ୬୮ ପାଉଣ୍ଡ ପାଖାପାଖି ଓ ପରମାୟୁ ୧୫ରୁ ୨୦ ବର୍ଷଯାଏ । ଅଥଚ ବଡ଼ିଆଲି ସାମୁଦ୍ରିକ ଓଧଙ୍କର ଓଜନ କେଉଁଠି କେଉଁଠି ୪୫ରୁ ୧୦୦ ପାଉଣ୍ଡ ଥିବାର ଜଣାପଡ଼ିଲାଣି । ସମୁଦ୍ର ଉପକୂଳବର୍ତ୍ତୀ ଇଲାକାରେ ପାଣିରେ ଏମାନେ ଲଗାତର ଚାରିମିନିଟକାଳ ଖୁସିରେ ବୁଡ଼ିରହନ୍ତି—ଅଥଚ ସମୁଦ୍ରର ଗହୀର ପାଣିରେ ଖୁବ୍ ବେଶିହେଲେ ୯୦ ସେକେଣ୍ଡ ପର୍ଯ୍ୟନ୍ତ ବୁଡ଼ି ରହିଥାନ୍ତି । ଏମାନଙ୍କ ରଙ୍ଗ ଧୂସରିଆ କଳା ଓ ଚମଡ଼ା ଭାରି ତେଲିଆ । ପାଣିରୁ ଉଠିଲାକ୍ଷଣି ଟୋପେ ପାଣି ଦେହରେ ଲାଗି ନ ରହି ଖସିପଡ଼େ ।



ଆଗ ଥାବା ( ପାଦତଳ )କୁ ତୁଣ୍ଡର ଜାବୁଡ଼ଧର ଗୋଟିଏ ହାତରେ ଖାଇବା ଜନଷ ଶୁେବାଇବାବେଳେ, ଅନ୍ୟ ଥାବାରେ ଶାମୁକା, କଙ୍କଡ଼ା ଓ ସାମୁଦ୍ରିକ ଜୀବଙ୍କୁ ଅନାୟାସରେ ଚୂନାକରି ପକାଏ । ସାମୁଦ୍ରିକ ଓଧର ଦାନ୍ତ ଠିକ୍ ଦାଢ଼ୁଆ ଖିଲିକାଣ୍ଡ ଭଳି । ପହଁରିବାରେ ଏମାନେ ଖୁବ୍ ଧୁରନ୍ଦର ଓ ପହଁରିଲାବେଳେ ପଛଭାଗ ଚହଲାଇ ଦ୍ରୁତ ଗତିରେ

ପହଁରିଥାନ୍ତି । ବୃଡ଼ମାରିବାରେ ଏହି ସାମୁଦ୍ରିକ ଓଧ ଜଳଦସ୍ୟୁଠୁଁ ବଳି । ଶିକାରବେଳେ ପାଣିରେ ତ ପୁଣି ଭୂଇଁରେ ମଧ୍ୟ ଏମାନଙ୍କୁ ଦେଖିବାକୁ ମିଳେ । ଅଣ୍ଡିରି ଓଧଟିଏ ଦିନକୁ ୧୫ ପାଉଣ୍ଡଯାଏ ମାଛ ହଜମ କରୁଥିବାବେଳେ ମାଈ ଓଧ ଖୁବ୍ ବେଶିହେଲେ ୮ରୁ ୧୦ ପାଉଣ୍ଡ ପର୍ଯ୍ୟନ୍ତ ଖାଦ୍ୟଖାଏ । ଏମାନେ ସ୍ୱଭାବତଃ ଯାଯାବର ଜୀବନଯାପନ କରନ୍ତି । ଗୋଟିଏ ଇଲାକାରୁ ୫।୬ ମାସ ବ୍ୟବଧାନରେ ଅନ୍ୟତ୍ର ଯାଆନ୍ତି । ମାଈ ଓଧମାନେ ଖାଦ୍ୟ ସଂଗ୍ରହ ବ୍ୟତୀତ ଗୋଟିଏ ଦିନର ଏକ ଚତୁର୍ଥାଂଶ ସମୟ ଛୁଆପିଲାଙ୍କ ଲାଳନ ପାଳନ କାମରେ ଲାଗିଥାଏ । ଖୋରାକ ଅନ୍ୱେଷଣରେ ଏମାନେ ବେଳେବେଳେ ୧୮୦ ଫୁଟ ପାଣିତଳକୁ ଚାଲିଯାଆନ୍ତି । ଅତିଗଭୀର ହିମ ପାଣିରେ ଏମାନେ ରହିପାରନ୍ତି ନାହିଁ ।

ସାମୁଦ୍ରିକ ଓଧ ବିଶେଷକରି ରୁଷିଆର କୁରାଲ ଉପଦ୍ୱୀପ, ଏଣ୍ଟି ଏମଚକଟା, ଆମେରିକାର ଉମନାକ ଓ ପ୍ରଶାନ୍ତ ମହାସାଗର କେମ୍ବ୍ରିଯା କେପ ଷ୍ଟେନସର, ଭେଙ୍କୁବରରେ ଦେଖାଯାଆନ୍ତି । ସଂପ୍ରତି ଆଲେସ୍କା ଉପଦ୍ୱୀପ ଏହି ସାମୁଦ୍ରିକ ଓଧଙ୍କର ଚାରଭୂଇଁ । ସାମୁଦ୍ରିକ ଓଧର ମାଂସ ଓ ଚମଡ଼ା ଖୁବ୍ ମୂଲ୍ୟବାନ ଏବଂ ଆନ୍ତର୍ଜାତିକ ବଜାରରେ ଏହାର ଚାହିଦା ମଧ୍ୟ କିଛି କମ ନୁହେଁ । ଏଥିପାଇଁ ସାମୁଦ୍ରିକ ମତ୍ସ୍ୟଜୀବୀମାନେ ଓଧ ଶିକାରରେ ଲାଳାୟିତ ହୋଇ ପଡୁଥିଲେ । ଏକେ ତ ଓଧ ମାଂସ ଓ ଚମଡ଼ାର ଚଡ଼ା ଭାଉ, ପୁଣି ସାମୁଦ୍ରିକ ମତ୍ସ୍ୟଜୀବୀଙ୍କ ମତ୍ସ୍ୟ ସଂଗ୍ରହ ଇଲାକାରୁ ସେମାନେ ବହୁ ପରିମାଣରେ ମାଛ ଖାଇଯାଉଛନ୍ତି ଏହି ଆଳରେ ଓଧ ଶିକାର ଉପରେ କୌଣସି କଟକଣା ନ ଥିବାରୁ କ୍ରମଶଃ ସାମୁଦ୍ରିକ ଓଧଙ୍କର ବଂଶ ଲୋପ ପାଇବାରେ ଲାଗିଲା । ଏହାର ପ୍ରତିକାର ସ୍ୱରୂପ ୧୯୧୧ ମସିହାରେ ଆମେରିକା, ବିଲାତ, ଜାପାନ ଓ ରୁଷିଆ ଏହି ଚାରିଦେଶ ସାମୁଦ୍ରିକ ଓଧ ଶିକାର ବନ୍ଦ କରିବାପାଇଁ ମିଳିତଭାବେ ରାଜିହେଲେ । ଏହି ଚାରିଦେଶର ମିଳିତ ସହଯୋଗ ଓ ସତ୍ୱୋଦ୍ୟମ ଯୋଗୁଁ ସାମୁଦ୍ରିକ ଓଧଙ୍କ ବଂଶରକ୍ଷା ଓ ଲାଳନପାଳନ ସମ୍ପର୍କରେ ଏବେ ଗବେଷଣା ଓ ତଦାରଖ କାମ ପ୍ରାଧାନ୍ୟ ଲାଭ କରିଥିବା ସୁଖର ବିଷୟ ।



# ରାତ୍ରୀର ପ୍ରହରୀ ପେଚ୍ଛ

ପଶୁ ପକ୍ଷୀମାନେ ଆମ ଭଳି ଈଶ୍ୱର ସୃଷ୍ଟି ପ୍ରାଣୀ । ଆମଭଳି ସେମାନେ ମଧ୍ୟ ପେଟ ପାଟଣା ପାଇଁ ଲଗିଥାନ୍ତି । ସେମାନଙ୍କ ସୃଷ୍ଟି ଓ ଜୀବନଧାରା ଅତି ବିଚିତ୍ର । ମଣିଷ ସମାଜରେ ଶ୍ରମ ବର୍ଗୀକରଣ ଭଳି ପକ୍ଷୀ-ମାନଙ୍କ ଭିତରେ କିଏ କି କାମ କରିବ ତାହା ଧାର୍ଯ୍ୟ ହୋଇଛି କେଉଁ ଆଦ୍ଧମା ଅମଳରୁ ତାହା କହିବା କଠିନ ମଧ୍ୟ । ପକ୍ଷୀ ଜଗତରେ ଭଲକ ଭଳି ଜାମିକା ଚଢ଼େଇ ଅଛନ୍ତି ଯଥା—ଦରଜୀ, ମାଛଧରାଳୀ, ମଇଳା ସଫାକାରୀ, ଇଗଲ, ଛଞ୍ଚାଣ ଭଳି ଶିକାରୀ ଓ ବାୟା ଚଢ଼େଇ ଭଳି ବୁଣାଳୀ ଏବଂ କାଠୁରିଆ ଭଳି ବଢ଼େଇ ଚଢ଼େଇ । ଏମାନଙ୍କ ଭଳି ପେଚ୍ଛ ଏକ ରାତି ଜଗୁଆଳ ପକ୍ଷୀ । ଆଉ ସବୁ ପଶୁ ପକ୍ଷୀଙ୍କ ପରି 'ପେଚ୍ଛ'କୁ ନେଇ ଆମ ରାଜ୍ୟରେ ପ୍ରବାଦଟି ଏବେ ବି ବଞ୍ଚି ରହିଛି । ତାହା ହେଉଛି—

"ପେଚ୍ଛ— ! !
ଆର ଜନମରେ ଲୁହା ଚୋରଣୀ
ଦେଢ଼ଶୁର ଅଇଁଠା ଖାଇ
ହାତ ଗୋଡ଼ ତୋର ମେଞ୍ଚା ।"

ଏହାର ଅର୍ଥ ହେଉଛି—ପୂର୍ବ ଜନ୍ମରେ ଲୁହା ଚୋରି କରିଥିଲେ କିମ୍ବା ଦେଢ଼ଶୁର ଅଇଁଠା ଖାଇଥିଲେ ସ୍ତ୍ରୀ ଲୋକ ସେଇ ପାପ ହେତୁ ପର ଜନ୍ମରେ ପେଚ୍ଛ ହୋଇ ଜନ୍ମ ହୁଏ । ସାତ ଜନ୍ମ ଯାଏ ପେଚ୍ଛ ଜୀବନରୁ ତା'ର ମୁକ୍ତି ନଥାଏ । ଦିନରେ ଲୁଚେ । ରାତିରେ ବାହାରେ । ଲୁଚିଛପି କେଉଁଠି ଉଜାଗର ଥାଏ—ମଝିରେ ମଝିରେ 'ହୁକ୍ ହୁକ୍' ବୋବାଉଥାଏ । ତା ମୁହଁ ଚାହିଁଲେ ଅଯଶ ହୁଏ । ଏଣୁ ଘର ପାଖରେ ପେଚ୍ଛ ରାବ ଶୁଣିଲେ ଲୋକେ ତାକୁ ହୁରୁଡ଼େଇ ଦିଅନ୍ତି । କୁହନ୍ତି "ପେଚ୍ଛକୁ ପେଚୀ, ଯହିଁ ବାଞ୍ଛନ୍ତି ମାଉଁସ ମେଞ୍ଚି ।'

ଏହା ଏକ ଅନ୍ଧ ବିଶ୍ୱାସ । କିଏ ନ ଜାଣେ ଯେ—ରଜ ପେଚ୍ଚ ସ୍ୱୟଂ ଲକ୍ଷ୍ମୀ ଠାକୁରାଣୀଙ୍କର ବାହାନ । ଶ୍ରୀ ଓ ଶୁଭଲାଭର ପ୍ରତୀକ ଏବଂ ଆମ ସଂସ୍କୃତିରେ ସରସ୍ୱତୀଙ୍କ ବାହାନ ହଂସ, କାର୍ତ୍ତିକଙ୍କର ବାହନ ମୟୁର, ବିଷ୍ଣୁଙ୍କର ବାହାନ ଗରୁଡ଼ ପକ୍ଷୀ ଭଳି ପେଚକ ବା ପେଚ୍ଚ ଅଶୁଭ ଶକୁନ ବା ଆମର କ୍ଷତିକାରକ ପକ୍ଷୀ ନୁହେଁ । ପୃଥିବୀର ଆଉ ସବୁ ଦେଶରେ ଅନ୍ୟ ପକ୍ଷୀଙ୍କ ଭଳି ପେଚ୍ଚ ଘୃଣ୍ୟ ପକ୍ଷୀ ନୁହେଁ ।

ପେଚ୍ଚ ମୁଖ୍ୟତଃ ଏକ ରାତିଚର ପକ୍ଷୀ । ପୃଥିବୀର ସବୁଆଡ଼େ ପେଚ୍ଚ ପ୍ରାୟ ଦେଖାଯାଆନ୍ତି । ରଙ୍ଗ, ଆକାର ଭେଦରେ ପେଚ୍ଚ ମୋଟ ମୋଟି ସାତ ଜାତିର । ଯଥା—(୧) ଗୋଳିଆ ପେଚ୍ଚ, (୨) କୁନି ପେଚ୍ଚ, (୩) ବଡ଼ମୁଣ୍ଡିଆ (୪) ଛୋଟ କାନିଆ (୫) ବଡ଼ କାନିଆ, (୬) କାଳ ପେଚ୍ଚ ଓ (୭) ରଜ ପେଚ୍ଚ । ଏହି ସାତ ଜାତିର ପେଚ୍ଚଙ୍କ ଭିତରୁ ରଜ ପେଚ୍ଚ ଓ କଳା ପେଚ୍ଚ ଖାଲି ଆମ ଦେଶରେ ନୁହେଁ, ଉଣାଧିକେ ବହୁ ଦେଶରେ ଏବେ ବି ଦେଖା ଯାଆନ୍ତି ।

ଗୋଳିଆ ପେଚ୍ଚ ଦେଖିବାକୁ ବଡ଼ । ଏହାର ଲମ୍ବା ୩୫ ସେଣ୍ଟି-ମିଟର । ରଙ୍ଗ ପାଉଁଶିଆ । ପେଟତଳ ଧଳା । ଏ ଜାତୀୟ ପେଚ୍ଚ ଗଛ କୋରଡ଼ରେ ବସା ବାନ୍ଧନ୍ତି । ଏପ୍ରିଲରୁ ମେ ମାସ ମଧ୍ୟରେ ଥରକେ ୪ରୁ ୭ଟି ଯାଏ ଅଣ୍ଡା ଦିଅନ୍ତି । ଅଣ୍ଡା ଦେବାର ୩୨ ଦିନ ଭିତରେ ଅଣ୍ଡା ଫୁଟେ । କୁନି ପେଚ୍ଚକୁ ଅଣ୍ଡିରା ପେଚ୍ଚ ଖାଇବାକୁ ଦିଏ ଓ ମାଆ ପେଚ୍ଚ ତା'ର ହେପାଜତ କରେ । ୯ରୁ ୧୦ ସପ୍ତାହ ଭିତରେ କୁନି ପେଚ୍ଚ ଉଡ଼ି ଶିଖେ । ଗୋଳିଆ ପେଚ୍ଚ ଉତ୍ତର-ପୂର୍ବ ସ୍କଟଲାଣ୍ଡକୁ ବାଦଦେଲେ ବିଲାତର ଅନ୍ୟସବୁ ଅଞ୍ଚଳରେ ଦେଖାଯାନ୍ତି ।

କୁନି ପେଚ୍ଚର ମୁଣ୍ଡ ଚେପ୍ଟା, ଲମ୍ବ ୨୦ ସେଣ୍ଟିମିଟର । ଦିନରେ ବେଶି ବୁଲାଚଲା କରେ । ଗଛ କୋରଡ଼, ଦେଓ୍ୱାଲ, ଛାତ, ଟେଲିଫୋନ ଖୁଣ୍ଟ ଉପରେ ବସେ । ଏ ଜାତୀୟ ପେଚ୍ଚ ବେଶି ଇଟାଲିରେ ଦେଖାଯାଆନ୍ତି ।

ବଡ଼ ମୁଣ୍ଡିଆ ପେଙ୍ଗୁର ଲମ୍ବ ପ୍ରାୟ ୩୮ ସେଣ୍ଟିମିଟର, ଅନ୍ୟ ପେଙ୍ଗୁଙ୍କ ତୁଳନାରେ ଏହାର ମୁଣ୍ଡ ଅଧିକ ବଡ଼ ଓ ଡେଣା ଅପେକ୍ଷାକୃତ



ସାନ । ଶ୍ଲେଟ କାନିଆ ଓ ବଡ଼ କାନିଆ ପେଙ୍ଗୁ ଆକାର ଭେଦ ହେତୁ ଦେଖିବାକୁ ଏକାଭଳି । ଦିନରେ ଅନ୍ଧାରୁଆ ଜାଗାରେ ଲୁଚି ଥାଆନ୍ତି । ଝଡ ବେଶି

ହେଲେ ବାହାରକୁ ବାହାରନ୍ତି । ଏ ଜାତୀୟ ପେଚ୍କର ଶରୀର ଗଠନ ବଡ଼ଆଗ । ଏମାନଙ୍କ ଆଖି ମୁଣ୍ଡ ମଝିରେ । ଏମାନେ ଡୋଳାଠାରୁ ଅଧିକ ମୁଣ୍ଡ ବୁଲାଇ ସହଜରେ ସବୁ କିଛି ଦେଖି ପାରନ୍ତି ।

କାଳ ପେଚକୁ କେହି କେହି ବାଘ ଓ ଉଲ୍ଲୁକ ବୋଲି କୁହନ୍ତି । ତାର ଆକାର ଠିକ ମାଟିଆ ଚିଲପରି । ଦେଖିବାକୁ ହୃଷ୍ଟପୁଷ୍ଟ ଦେହର ରଙ୍ଗ କଷା, ହଳଦିଆ ଓ କଳା ରଙ୍ଗ ଦାଗରେ ଭରିଥାଏ । କଳା ପେଚକର ମୁଣ୍ଡରେ ଦୁଇଟି କର୍ଣ୍ଣ ସ୍ତବକ ବା ସିଂହ ରହିଥାଏ । ଦିନ ବେଳେ ବୁଦା ତଳେ, ନତୁବା ନଈକୂଳ ଗିରିପଥ ଗୁହାଯାଗା ଓ ପଥର ମୁଣ୍ଡିଆ ଉପରେ କଳା ପେଚ ସାଧାରଣତଃ ବସିବାକୁ ଭଲପାଏ । ବେଳେବେଳେ ମାଛ କଙ୍କଡ଼ା ଖାଆନ୍ତି ଓ କେବେ କେବେ କ୍ଷେତୁଆ ମୂଷାକୁ ନପାଚ କରି ଖାଆନ୍ତି । ଏ ଜାତୀୟ ପେଚକଙ୍କ ଗର୍ଜ୍ଜନ ଓ ସତ୍କାର ଶବ୍ଦ ବଡ଼ ରହସ୍ୟମୟ ଓ ବହୁ ଦୂରକୁ ଶୁଭେ । କାଳ ପେଚ ବା କଳାମୁହାଁ ପେଚକୁ ଦେଖିଲାକ୍ଷଣି ଲୋକେ ଅଶୁଭ ଶକୁନ ବୋଲି ଭାବନ୍ତି—କେହି କେହି ଛଅଟା ଗାଳନ୍ତି—

"ପେଚ ବୋବାଏ ଯାହାର ବାଡ଼
ତା' ଘରେ ପଶଇ କାଳ ଧୋକଡ଼"

ଏହି ଅନ୍ଧବିଶ୍ୱାସ ଗୁଜବ ଓ ଉଡ଼ା କଥାର ବାସ୍ତବରେ ଗୋଡ଼-ନ ଥାଏ ।

ରଜ ପେଚକୁ କେହି କେହି ଲକ୍ଷ୍ମୀ ପେଚ ବୋଲି କୁହନ୍ତି । ଏମାନଙ୍କ ମୁହଁ ପାତମାଙ୍କଡ଼ ମୁହଁ ଭଳି । ଅନ୍ୟ ପେଚକଙ୍କ ତୁଳନାରେ ଏମାନେ ବାଙ୍କର । ବର୍ଣ୍ଣ ଧୂସର ବାଦାମୀ ରଙ୍ଗର-ସୁନେଲି ମିଶା ଧଳା ଟିପି ଟିପିଆ ଚିହ୍ନ ପଡ଼ିଥାଏ । ମୁଣ୍ଡ ଗୋଲକାର, ଖୋଲା ସମତଳ ଅଞ୍ଚଳ ଜନବସତି ପୁରୁଣା ଅଟ୍ଟାଳି, ବର ଆବ ଗଛ କୋରଡ଼ରେ ବସା ବାନ୍ଧନ୍ତି । ଏମାନେ କ୍ଷୀଣାଲୋକ ଓ ନିଶାଚର । ଦିନ ବେଳେ ଲୁଚିଥାଆନ୍ତି—ଗୋଧୂଳି ନଇଁଲେ ବାହାରକୁ ବାହାରନ୍ତି । ନିଃଶବ୍ଦରେ ଗୋଟିଏ ଧାଗାରେ ବସି ଶୃଙ୍ଗ ଆଡ଼କୁ ଆଖି ବୁଲାଉ

ଥାଆନ୍ତି । କୌଣସି ଅସ୍ୱାଭାବିକ ଜୀବଜନ୍ତୁ ପଶୁପକ୍ଷୀ ଓ ମଣିଷ ଆଦିଙ୍କ ଗତି ଗତି ଦେଖିଲାକ୍ଷଣି ହୁସିଆର ହୁଇଆ ଟୁଡ଼ ହୁକ୍ ହୁକ୍ ବୋବାନ୍ତି ଅନେକ ବେଳଯାଏ । ଜଙ୍ଗଲରେ ରାତି ଶୀକାରୀ ତଥା ଅନ୍ୟ ପଶୁପକ୍ଷୀଙ୍କ ପ୍ରତି ଆସନ୍ନ ବିପଦର ସୂଚକ ପାଇଲାକ୍ଷଣି ଏମାନେ ଅନ୍ୟମାନଙ୍କୁ ସତର୍କ କରାଇ ଦିଅନ୍ତି ବୋଲି ବହୁ ପକ୍ଷୀ ବିଶାରଦ ତଥା ଶିକାରୀଙ୍କ ଅନୁଭୂତି ବର୍ଣ୍ଣନାରୁ ସୁସ୍ପଷ୍ଟ । କୋଠଲି ଝିଣ୍ଟିକା, ଫସଲ ନଷ୍ଟକାରୀ କ୍ଷେତଭୁଆ ମୂଷା, ଚୁଚୁନ୍ଦ୍ରାଙ୍କ ବଂଶ ନିପାତ କରିବାରେ ଏ ଜାତୀୟ ପେଚାମାନେ ଧୁରନ୍ଧର । ଏପ୍ରିଲ ଓ ମେ' ମାସ ବେଳକୁ ରାଜ ପେଚା ଥରକେ ୨।୩ଟି ଅଣ୍ଡା ଦିଏ । ଏ ଅଣ୍ଡା ଦେଖିବାକୁ ଧଳା ଓ କଉଡ଼ିକିଆ ।

ରାଜ ପେଚା ଘର ଅଗଣାରେ ବା ନିକଟରେ ବସିଲେ ଲକ୍ଷ୍ମୀ ଆସିବେ ବୋଲି ଆମ ଗାଁ ଗହଳରେ ଅନେକଙ୍କର ଧାରଣା । ପେଚାକୁ ଘୃଣା କରି ବିଚାରିବା ଅନୁଚିତ ଯେ—"ପେଚା ବୋବାଇଲେ ମଡ଼ୁଡ଼ି ପଡ଼େ ।" ଆଉ ପକ୍ଷୀଙ୍କ ଭଳି ପେଚା ଈଶ୍ୱର ସୃଷ୍ଟି ଏକ ଉପକାରୀ ପକ୍ଷୀ ଯାହାର ଆଦରରେ ବଞ୍ଚିବାର ସ୍ୱଭାବ ସୁଲଭ ଅଭିଳାଷ ଅଛି—ବିଲାତ ଭଳି ଦେଶରେ ଲୋକେ ପେଚା ପାଳିବାରେ ମନ ବଳାଉଥିବା ବେଳେ—ଆମେ ଦନାଇ ବଚନର ସେଇ ଚେତାବନୀଟିକୁ ଭୁଲିଯିବା ଉଚିତ ନୁହେଁ—

"ପୋଖରୀ କୂଳରେ ଗୃହ ତଉ ବାଛୁ ବରଷକେ ଥରେ—ଡ଼ିମ୍ବ ପାରିଦେଲ ଲକ୍ଷ୍ମୀଙ୍କ ପେଚା; ସାପ ଖାଇଗଲା ତିନୋଟି ଅଣ୍ଡାରୁ ଦୁଇଟି ରହିଲା ଗୋଟିଏ ଛୁଆ—ମାଡ଼ିଲା ଆଗରୁ ଛାଡ଼ିଲା ଯାହା···ଅଶୁଭ ଅଲକ୍ଷ୍ମୀ ହଟାଅ ଦୁଆ, ତମକୁ ମିଛ ଓ ମୋତେ ସତ ଏହା ଦେଖାଇ ପଚାରେ କହ ପାଠୁଆ ।"



# କଳା ବାହୁଟିଆ

**ସବୁ** ଦେଶରେ ଜଣାଅଜଣା ପଶୁପକ୍ଷୀଙ୍କୁ ନେଇ ଅନେକ ନାନା-ବାୟା ଗୀତ ସ୍ଲୋକ ପିଲାଙ୍କପାଇଁ ନେଇଁ ଆଈ ମା' ଅମଳରୁ ମଣିଷ ଭୁଣ୍ଡରେ ଏପାଏ ଯାଇଁ ରହିଛନ୍ତି । ଆମ ସାଇକାରେ ବି କଳା-ବାହୁଟିଆକୁ ନେଇ ନାନା ବାୟା ଗୀତ ରହିଛନ୍ତି । ଏଇ 'କଳା ବାହୁଟିଆ'ର ଇଂରେଜୀ ନାଆଁ ହେଉଛି BLACK BUCK । ଏହାକୁ କେହି କେହି କୃଷ୍ଣସାର ମୃଗ ବୋଲି କୁହନ୍ତି । ମୃଗମାନଙ୍କ ମଧ୍ୟରେ "କୃଷ୍ଣସାର" ବା କଳା ବାହୁଟିଆ ସଭିଙ୍କଠାରୁ ସୁଧାର ଓ ଭଲ ।

ନାନା ଜାତିର ହରିଣ ପରିବାରର ଚରାଭୂଇଁ ୟୁରୋପ, ଏସିଆ, ଉତ୍ତର ଆଟଲାସ ପାର୍ବତ୍ୟାଞ୍ଚଳ ଓ ଆଫ୍ରିକା ସମେତ ଭାରତରେ ଏକଦା କଳାବାହୁଟିଆ ପଞ୍ଜାବ, ହିମାଚଳ ପ୍ରଦେଶ, ପାତିଆଲା, କାଶ୍ମୀର, ଉତ୍ତର ସିକମର ନେପାଳ ଉପତ୍ୟକା, ଉତ୍ତର ପ୍ରଦେଶର ତରାଇ, ଆସାମର ତୃଣାଞ୍ଚଳ ଦକ୍ଷିଣ ଭାରତର ପେନିନସୁଲା ସମେତ ଆମ ଓଡ଼ିଶାର ଗଞ୍ଜାମ ଜିଲ୍ଲାର ଭେଟିନୋଇ, ବାଲିପଦାର, ବନ୍ଧଖୋଲି, ପାଣ୍ଡିଆ, ସୁନାପଲ୍ଲୀ, ରାମଣ୍ଡା ଏବଂ ପୁରୀ ଜିଲ୍ଲାର ବାଲିଖଣ୍ଡ ଓ ଚିଲିକା ଅଞ୍ଚଳରେ ଭରି ରହିଥିଲେ ଆଗରୁ । ହେଲେ ସେକାଳ ପଛାଳି ଆଜି ସାତ ସପନ ।

ଲୋପପାଇ ଆସୁଥିବା ଏ କଳା-ବାହୁଟିଆର ଚାଲିଚଳଣ ଆଉ ହରିଣଙ୍କ ଠାରୁ ନିଆରା ଓ ସୁଧାର ।

କଳାବାହୁଟିଆ ବା କୃଷ୍ଣସାର ଏକ ତୃଣଭୋଜୀ ଓ ଶାକାହାରୀ ପ୍ରାଣୀ ଏବଂ ସ୍ୱଭାବତଃ ଅହିଂସ ଅଟେ । ଦେଖିବାକୁ ଭାରି ସୁନ୍ଦର । କଳାବାହୁଟିଆ ଅଗ୍ନାଗ୍ନି ଜଙ୍ଗଲ ଅପେକ୍ଷା ଘାସଭରା ସମତଳ ଭୂଇଁରେ ରହିବାକୁ ସେମାନେ ଅଧିକ ପସନ୍ଦ କରନ୍ତି । ତାଙ୍କର ଦୃଷ୍ଟିଶକ୍ତି ଯେଉଁଭଳି ତୀକ୍ଷ୍ଣ, ଆଘ୍ରାଣ ଶକ୍ତି ମଧ୍ୟ ସେହିଭଳି ତୀବ୍ର । ଦୂରରୁ କିଏ ଆସୁଛି ସହଜରେ ଦେଖି ଓ

ଶୁଂଘି ଜାଣିପାରନ୍ତି । କୌଣସି ଅନାହୂତ ବିପଦ ବା ଆକ୍ରମଣରୁ ରକ୍ଷାପାଇବା ପାଇଁ ଏତିକି ଏମାନଙ୍କ ପାଇଁ ଯଥେଷ୍ଟ । ଏମାନଙ୍କୁ ଦୌଡ଼ରାଣୀ ( SPRINT QUEEN ) ବୋଲି କେହି କେହି କୁହନ୍ତି । ଏମିତିକି ଗୋଟିଏ ବଳିଷ୍ଠ କୁଦାରେ ନଅମିଟର ଡେଇଁବାର ରେକର୍ଡ କଳାବାହୁଟିଆ ସୃଷ୍ଟିକରି ସାରା ଦୁନିଆକୁ ଚମକାଇ ଦେଇଛି ବୋଲି କୃଷ୍ଣସାର ମୃଗବିଶାରଦଙ୍କ ଦୃଢ଼ମତ । ହେଲେ ଆଜି ମୃଗଙ୍କଠାରୁ ଏମାନେ ଭାରି ଡରକୁଳା ଓ ଚାଉଳା । ମାତ୍ର ଘଣ୍ଟାଏ ସମୟରେ ଏମାନେ ୬୦ କିଲୋମିଟର ଦୌଡ଼ିପାରନ୍ତି । ଉଦୁ ଉଦିଆ ଖିଆବେଳ ଆଗରୁ କଳାବାହୁଟିଆ ଗୁହାଆଡେ ଚରିବୁଲିକରି ପେଟଭରି ଏମିତି ଗଛମୂଳକୁ ପଳାଇ ଆସି ବିଶ୍ରାମନିଏ, ଯେଉଁଠାରୁ ସିଏ ବହୁ ଦୂରରୁ ତାକୁ ଆକ୍ରମଣ କରିବାକୁ ଆସୁଥିବା ଶତ୍ରୁକୁ ସହଜରେ ଦେଖି ନିରାପଦ ଦୂରତ୍ୱକୁ ଧାଇଁ ଯାଇପାରିବ । ଏଥିରୁ ସିଏ କେତେ ଚାଲାଖ ତାହା ବଖାଣିବା ଅନାବଶ୍ୟକ । ଛାଇଲେଉଟି ଯେତେବେଳେ ବେଳ ବୁଡ଼ ବୁଡ଼ ହୁଏ ଏମାନେ ପୁଣି ଦୋହରି ଚରିବାକୁ ଧାଇଁଯାଆନ୍ତି । ଏହି ସମୟ ସେମାନଙ୍କ ଚରିବାପାଇଁ କୁଆଡ଼େ ଅଧିକ ନିରାପଦ । ଏମାନେ ଦଳବନ୍ଧି ରୁହନ୍ତି ଓ ଗୋଟିଏ ଦଳରେ ୧୫ରୁ ୩୦ ଯାଏ କଳାବାହୁଟିଆ ସାଧାରଣତଃ ଥାଆନ୍ତି । ସବୁଠୁ ବୟସ୍କ ମାଈ କଳାବାହୁଟିଆ ହିଁ ଏଇ ଦଳର ଦଳମୁଖିଆ । ସମସ୍ତଙ୍କର ଆପଦବିପଦ, ଭଲମନ୍ଦର ଦାୟ ତା' ମୁଣ୍ଡରେ ଲଦା ।

ଭାରତୀୟ କଳାବାହୁଟିଆଙ୍କର 'ବାବୁଲ' ଓ 'ଖଇରଢ଼' ଗଛର ଛାଇ ଓ ମୂଳ ଏକ ପ୍ରିୟ ବିଶ୍ରାମସ୍ଥଳ । ଓଡ଼ିଶାର ଲୋକଗୀତ କୁହେ—

"ହରଡ଼ା ପାଚେ ବାହାଡ଼ା ପାଚେ
ବାବୁଲ ଛାଇରେ କଳାବାହୁଟିଆ
ଖୁସିରେ ନାଚେ ।"

କିଏ ନଜାଣେ ଜୋର ଯାର ମୁଲକ ତା'ର—ସିଂହ, ହେଟାବାଘ ଓ ବଣୁଆ ବଳିଆ କୁକୁର ଏମାନଙ୍କର ବଡ଼ ଶତ୍ରୁ । ବଢ଼ିଆଳ କଳାବାହୁଟିଆର କାନ୍ଧଠାରୁ ଲମ୍ବା ପ୍ରାୟ ୮୦ ସେଣ୍ଟିମିଟର ଓ ଓଜନ ୩୦ରୁ ୪୦ କିଲୋ



ଯାଏ ହୋଇଯାଏ । ଶିଙ୍ଗ ହେଉଛି ଏମାନଙ୍କର ଆତ୍ମରକ୍ଷାର ଏକମାତ୍ର ଆୟୁଧ । ଏ ଶିଙ୍ଗ ଆଉ ହରିଣଙ୍କଠାରୁ ନିଆରା ଓ ଲହରିଆ ; ଯାର ଲମ୍ବା ଗୋଟିଏ ମିଟର ବା ତତୋଽଧିକ ହୋଇଥାଏ କେତେକ କ୍ଷେତ୍ରରେ ।

କଳାବାହୁଟିଆର ଜୀବନଧାରା ବଡ଼ ଅଜବ । ସେ ସାଧାରଣତଃ ଗୋଟିଏ ଯୁଗ ( ୧୨ ବର୍ଷ ) ବଞ୍ଚେ ଏବଂ ଜନ୍ମର ପ୍ରାୟ ୧୫।୨୦ ମାସ ଭିତରେ ଉଭୟ ମାଈ ଓ ଅଣ୍ଡିରା କୃଷ୍ଣସାର ମୃଗ ପ୍ରଜନନକ୍ଷମ ହୁଅନ୍ତି । ଋତୁ ବଦଳରେ ମଣିଷ ଦେହରେ ତାର ପ୍ରଭାବ ଭଳି କଳାବାହୁଟିଆର ରଙ୍ଗ ଖରା ଋତୁରେ ଈଷତ ବାଦାମୀ ଅଥଚ ଶୀତଋତୁରେ ଚକ୍‌କଣିଆ ଭେଲଭେଟ ରଙ୍ଗ ଧରେ । ଏହି ସମୟରେ "କଳାବାହୁଟିଆ"କୁ ଦେଖିବା ଲୋକର ଆଖି ରହିଯାଏ । କଳାବାହୁଟିଆର ଚମ ଉପରେ କଳା ଧଳା ଛିଟ ଦେଖିବାକୁ ଭଲଲାଗେ । କେହି କେହି ମାଈ କଳାବାହୁଟିଆ ବର୍ଷର ସବୁ ସମୟରେ ଛୁଆଦେବାର ଦେଖା ଗଲେ ବି ସାଧାରଣତଃ ଓଡ଼ିଆ ବର୍ଷର ମାଘ ଓ ଫାଗୁଣ ମାସ ହେଉଛି ସେମାନଙ୍କର ଜଣାଶୁଣା ଋତୁକାଳ । ଅବଶ୍ୟ

'ନଈକେ ବାଙ୍କ, ଦେଶକେ ଫାଙ୍କ' ।

କଳାବାହୁଟିଆର ବିହାରସ୍ଥଳୀ କେଉଁଠି ଟାଙ୍ଗର ଭୂଇଁ ତ କେଉଁଠି ତୃଣ ଶସ୍ୟ ଓ ପାଣିଭରା ସମତଳ ଅଞ୍ଚଳ । କୃଷ୍ଣସାର ମୃଗର ଲୋଭନୀୟ ଶିଙ୍ଗ ବର୍ଷକୁ ବର୍ଷ ବଢ଼େ, ଅଥଚ ଥରେ ଭାଙ୍ଗିଗଲେ ଆଉ ଗଜୁରେ ନାହିଁ । ଅଣ୍ଡିରାର ଶିଙ୍ଗ ଥାଏ ଅଥଚ ମାଈ କୃଷ୍ଣସାରର ଏ ଶିଙ୍ଗ କ୍ୱଚିତ୍ ଦେଖିବାକୁ ମିଳେ । ଯୋଗ୍ୟତମର ଭୋଗ ଏକ ଜନ୍ମଗତ ଅଧିକାର ବୋଲି ଏମାନଙ୍କର ଧାରଣା । ଯେଉଁ ଅଣ୍ଡିରା କଳାବାହୁଟିଆ ନିଜ ଶିଙ୍ଗକୁ ଅଧିକ ଗଭୀରରେ ମାଟିରେ ପୋତେ, ସେ ହିଁ ଏ ଅଧିକ ମାଈ କଳାବାହୁଟିଆଙ୍କର ଅଧିକାରୀ ଏବଂ ସେ ଦଳରେ ଅଧିକ ବଳୀୟାନ ବୋଲି ଗଣାହୁଏ । ଏ ପ୍ରତିଯୋଗିତାରେ ହାରିଲେ କଳାବାହୁଟିଆର ମୁହଁ ତଳକୁ ନଇଁଯାଏ ।

କଳାବାହୁଟିଆ ଶାକାହାରୀ ଓ ତୃଣଭୋଜୀ ହରିଣ । ଯେଉଁଠି ପର୍ଯ୍ୟାପ୍ତ ଘାସ ତୃଣ ଓ ପାଣିଭରା ସମତଳ ଅଞ୍ଚଳ, ସେଇ ଇଲାକାରେ ସେମାନେ ସାଧାରଣତଃ ରହିଥାନ୍ତି । ଏହା ଅଭାବରେ ସେମାନେ ପେଟ ବିକଳରେ ଚାଷୀର ଫଳନ୍ତି କ୍ଷେତରେ ପଶି ପେଟ ଭରଣା ପାଇଁ ଫଳନ୍ତି ଫସଲ

ନଷ୍ଟ କରନ୍ତି । ଏ ସବୁର ଅଭାବ ତଥା କଳାବାହୁଟିଆର ଲହରିଆ ଶିଙ୍ଗ ଓ ମୁଣ୍ଡକୁ ବୈଠକ ଖାନାରେ ସଜାଇବା ପାଇଁ, ତାର ଚମଡ଼ା, ମାଂସ ଆଉ କାଳେ 'କସ୍ତୁରୀ ମୃଗ' ଥିବ ଏଇ ଲୋଭରେ ଅନେକଙ୍କ ଅବାଧ ଶିକାରରେ ସେମାନଙ୍କ ବଂଶ କ୍ରମଶଃ ଭାରତରୁ ଏବେ ଲୋପ ପାଇବା ଉପରେ ।

ବେଳ ଥାଉଁ ଥାଉଁ ଏହାର ସମୁଚିତ ପ୍ରତିକାର ଲୋଡ଼ା—ନୋହିଲେ ଚକଗୁଡ଼ କହୁଣୀକୁ ସବୁ ବହିଗଲା ପରେ ଆଉ କଣ ଥାଏ । ଡେରିରେ ହେଲେ ବି ଏବେ ଆମ ଓଡ଼ିଶାର ଆସିକା ଓ ବୁଗୁଡ଼ା ଅଞ୍ଚଳରେ ଲୋପପାଇ ଆସୁଥିବା ଏଇସବୁ କଳାବାହୁଟିଆଙ୍କ ସୁରକ୍ଷା ଓ ସଂରକ୍ଷଣ ପାଇଁ ରାଜ୍ୟ ସରକାର ଦୁଇଲକ୍ଷ ଟଙ୍କା ବିନିଯୋଗରେ ଏକ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ଏହା ସମୟୋଚିତ ପଦକ୍ଷେପ ହେଲେ ବି ପର୍ଯ୍ୟାପ୍ତ ନୁହେଁ । ଆଉ ସବୁ 'କଳାବାହୁଟିଆ' ଅଧ୍ୟୁଷିତ ଇଲାକାରେ ଠିକଣା ଚିହ୍ନୋଟକରଣ ଓ ତାକୁ ଅଭୟାରଣ୍ୟ ରୂପେ ଘୋଷଣା କେବଳ ନୁହେଁ, ପରନ୍ତୁ ସେଇ ମୂଳକରେ ତୃଣଭୂମି ସୃଷ୍ଟି, ଜଳାଶୟ ଖନନ, ମୃଗବିହାର ପ୍ରତିଷ୍ଠା ତଥା ଲୁପ୍ତପ୍ରାୟ କଳାବାହୁଟିଆ ଶିକାରୀଙ୍କ ପ୍ରବେଶ ଓ ଅବୈଧ ଶିକାର ରୋକିବା ପାଇଁ ଠିକଣା ପଦକ୍ଷେପ ଅଧିକ ଜରୁରୀ । ଆମ ଭାଗବତ କହେ—

"ଯେ ଦେଶେ କୃଷ୍ଣମୃଗସାର
ନ ଦେଖେ ବିପ୍ର ଭକ୍ତ ନର
ସେ ଦେଶେ ପୁଣ୍ୟ ଲେଶ ନାହିଁ
ତହିଁ ନଥିବ ଦେହ ବହି ।"

ଏକା ଆମ ଓଡ଼ିଆ ଭାଗବତ ନୁହେଁ; ରାମାୟଣ, ଅଭିଜ୍ଞାନଶାକୁନ୍ତଳମ୍ ଆଦି ବହୁ ଗ୍ରନ୍ଥରେ କାହିଁକି ତପୋବନ ଯୁଗରେ ଋଷି ଆଶ୍ରମରେ "କୃଷ୍ଣସାର ମୃଗ" ପାଳନ ଓ ରାଜସ୍ଥାନରେ ଅଢ଼େଇଶହ ବର୍ଷ ତଳର ଯୋଧପୁର ମହାରାଜା ଅଭୟ ସିଂହଙ୍କର ପ୍ରସାଦ ନିର୍ମାଣ ଲାଗି ଚୂନ ପୋଡ଼ା ପାଇଁ 'କଳାବାହୁଟିଆ'ର ସାହାରାହା ଓ 'ପ୍ରିୟ ଆଶ୍ରୟ ସ୍ଥଳ 'ଖେଜର୍ଲି' ଗଛକାଟିବାକୁ ବିରୋଧ କରି [illegible] ନାରୀ ଅମୃତା ଓ ତିନିଜଣଙ୍କ ମୁଣ୍ଡକାଟ [illegible]

'କଳାବାହୁଡିଆ'ଙ୍କ ପାଇଁ ଖେଳଦୀ ଗଛର ସେମାନଙ୍କ ଉତ୍ତରାଧିକାର ଲାଭ ତଥା 'ବନ୍ଧୋଇ' ଜାତିର ଏଥିପାଇଁ ପ୍ରତିବର୍ଷ ଉତ୍ସବ ପାଳନ, ଏବେବି ଚେତାଇ ଦିଏ, ଆମ ଗାଁଗହଳରୁ ହଜିଯାଉଥିବା ଲୋକଗୀତର ସେଇ ଧାଡ଼ିଗୁଡ଼ିକୁ—

"କଳାବାହୁଡିଆ ବସୁଛି କାହିଁ
ଉଞ୍ଚଉଥିବ ଦେଖୁଥିବ ହେଲେ
ପିଟିବ ନାହିଁ ।

ଜହ୍ନି ଫୁଲ ଠୋ ଠା
କାକୁଡ଼ି ଫୁଲ ଠୋ ଠା

କଳାବାହୁଡିଆ ବନେ ଆସିମିବ
କଅଁଳିଆ ଘାସ ଆଉ
ଚୂଆଟିଏ ଖୋଳି ଥୋଇଥା ।"



# ହସକୁରା କୁକାବୁରା

ମଣିଷ ଭଳି ଚଢ଼େଇମାନେ କଥା କୁହନ୍ତି, ପାଟି କରନ୍ତି, ନାଚନ୍ତି ଓ ଗୀତ ଗାଆନ୍ତି । ଆମ ଦେଶର ଶୁଆଶାରୀ କଥା କହନ୍ତି । ମୟୂର ନାଚେ । ରବିନ ଚଢ଼େଇ ଗୀତ ଗାଏ । ଅଷ୍ଟ୍ରେଲିଆ ଦେଶର ଗୋଟିଏ ଜାତିର ଚଢ଼େଇ ଠୋ ଠୋ ହସେ । ସେହି ଚଢ଼େଇର ନାଁ କୁକାବୁରା । ପକ୍ଷୀ ବିଶାରଦ-ମାନେ କୁହନ୍ତି ଯେ କୁକାବୁରା ଖରଖାପ୍ଟ ମାଛରଙ୍କା ଚଢ଼େଇଙ୍କର ବଂଶଧର । ଏହାର ଆଉ ଗୋଟିଏ ନାମ ହେଲା "ହସକୁରା ଜ୍ୟାକ୍ଆସ୍" । ଏହା ପ୍ରତିଦିନଶ୍ରୀ ସକାଳୁ ଠିକ୍ ସମୟରେ ଉଠୁଥିବାରୁ ଏହାକୁ ଜଙ୍ଗଲୀ ଲୋକଙ୍କର ଘଣ୍ଟା ବା "ବୁସମାନସ କ୍ଲକ" ବୋଲି କୁହାଯାଏ । ନଈକେ ବାଙ୍କ ଓ ଦେଶକେ ଫାଙ୍କ୍ । ତା'ଛଡ଼ା ଯେ ଦେଶ ଯାଇ, ସେ ଫଳ ଖାଇ । ଖରଖାପ୍ଟ ମାଛରଙ୍କା ଚଢ଼େଇଙ୍କଠାରୁ କୁକାବୁରାର ଚେହେରା ଓ ଚାଲିଚଳନ ଅନେକଟା ଅଲଗା । ସେମାନେ ସନ୍ତସନ୍ତିଆ ଜାଗା, ନଈକୂଳ, ବଗିଚା, ତୋଟା ଓ ଅଗଣାରେ ସାଧାରଣତଃ ଦେଖାଯାଆନ୍ତି । ବଡ଼ି ସକାଳୁ କୁକାବୁରା ଠୋ ଠୋ ହସି ବୋବାଏ । କେତେବେଳେ କର କର ତ କେତେବେଳେ ଫେଁ ଫେଁ । ଗୋଟିଏ କୁକାବୁରା ହସ ପସରା ମେଲିଲା କ୍ଷଣି ତାର ସାଙ୍ଗ ସାଥି ଚଢ଼େଇମାନେ ରୁଣ୍ଡ ହୋଇ ପାଳଧରି ବସନ୍ତି । ମନେହୁଏ ଯେମିତି ହସର ଫୁଆରା ଛୁଟୁଛି । ଆମ ଦେଶରେ ବଡ଼ିସକାଳୁ ଭଦଭଦଳିଆ ମୁହଁ ଚାହିଁଲେ ଦିନଟି ଭଲରେ ଯିବବୋଲି ଯେଭଳି ଧାରଣା, ଅଷ୍ଟ୍ରେଲିଆରେ ସକାଳୁ କୁକାବୁରାର ହସ ବୋବାଳି ଶୁଣିଲେ ଦିନଟି ଶୁଭ ବୋଲି ଲୋକେ ମନେକରନ୍ତି ।

କୁକାବୁରା ପୃଥିବୀର ଗୋଟିଏ ବିରଳ ହସକୁରା ଚଢ଼େଇ । ତାର-ଲମ୍ବ ୪୭ ସେଣ୍ଟିମିଟର । ଦେହ ତୁଳନାରେ କୁକାବୁରାର ମୁଣ୍ଡ ଓ ଥଣ୍ଟ ଟିକିଏ ବଡ଼ । ପର ଛାପକରା ଓ ଲାଞ୍ଜ ଲମ୍ବା ଏବଂ ମୁନିଆ । ଗଳାମୋଟା । ଯେତେବେଳେ ବୋବାଇବାକୁ ଆରମ୍ଭ କରେ ଠୋ ଠୋ ମଣିଷ ହସିଲାଭଳି ହସର ଫୁଆରା ଗୁରିଆଡ଼େ ବିଚ୍ଛୁଡ଼ି ହୋଇ ପଡ଼େ । ବହୁଦିନ ଧରି ଏ ଚଢ଼େଇ



ବିଷୟରେ ବିଶେଷ କିଛି ଜଣାନଥିଲା । ଆମ ଦେଶର ମାଛରଙ୍କା ଚଢ଼େଇ-ମାନେ ମାଛ ଶିକାର କରୁଥିବାବେଳେ ଲୁକାଲୁଚି ସାପ , ବେଙ୍ଗ,ଝିଟିପିଟି ପୋକ, ଜୋକ, ଗୁଣ୍ଡୁଆଣି ଓ ଘାସ ପୋକ ଖାଏ । ୩୫ ମିଟର ଦୂରରୁ ସେହି

ଗ୍ରେଟ କିନଷ ହେଉ ପଛେ ଚଢ଼େଇଟି ସବୁ ଦେଖିପାରେ । ନିଜ ଓଜନ ତୁଳନାରେ ଆହୁରି ଓଜନିଆ ଶିକାର ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ବୋହି ନେଇପାରେ ।

ଚଢ଼େଇଟିଏ ହେଲେବି ଆମ ଭଳି କୁକାବୁରା ଘର ମେଳାପି, ଘାଟରେ ଲୋକଙ୍କୁ ଦେଖିଲେ ଦୂରକୁ ଉଡ଼ିଯାଏନାହିଁ । କୁକାବୁରାର ପରମାୟୁ ପ୍ରାୟ ୨୦ ବର୍ଷ ଓ ତାର ବସା ତିଆରି କୌଶଳ ଘର କଣ୍ଢେଇଭଳିଆ । ପରିବାରର କେହି ବିପଦରେ ପଡ଼ିଲେ ଓ ମରିଗଲେ କୁକାବୁରାର ହସ ବୋବାଳିରୁ ଦୁଃଖ ବାରି ହୋଇଯାଏ । କୁକାବୁରା ଜନ୍ମ ଦେବାର ଋତୁ ହେଉଛି ବସନ୍ତକାଳ । କୁକାବୁରା ଜୀବନକାଳରେ ଥରେ ମାତ୍ର ସଙ୍ଗୀ ଚଢ଼େଇ ସହିତ ମିଳିତ ହୁଏ । ତାକୁ କେହି ଆକ୍ରମଣ କରେ କିମ୍ବା ତା ଇଲାକାରେ କେହି ଜବର ଦଖଲ କଲେ କୁକାବୁରା ପ୍ରାଣମୂର୍ଚ୍ଛା ଲଢ଼େଇ କରେ । କୁକାବୁରାର ହସ ତାର ସରସିଆ ଗୁଣ ଆଉ ଭାବଗତ ଏକତା ସୂଚାଏ ।

କୁକାବୁରା କାହିଁକି ହସେ ସେ ବିଷୟରେ ଅଷ୍ଟ୍ରେଲିଆରେ ଗୋଟିଏ କିମ୍ବଦନ୍ତୀ ଏବେ ବି ଲୋକପ୍ରିୟ । ସ୍ୱର୍ଗର ଦେବତାମାନେ ବ୍ରାହ୍ମମୁହୂର୍ତ୍ତରେ ନିଦ୍ରାଭଙ୍ଗ ପାଇଁ ପଶୁପତିଙ୍କୁ ଦାୟିତ୍ୱ ଦେଇଥିଲେ, ପଶୁପକ୍ଷୀ ଏକାମ ପାଇଁ କୁକାବୁରାକୁ ଜନ୍ମଦେଲେ । କୁକାବୁରା ଅନ୍ୟ ଚଢ଼େଇଙ୍କ ଭଳି ନ ବୋବାଇ ସକାଳୁ ହସେ ଓ ନିଦ ଭାଙ୍ଗି ଦିଏ । ଅଷ୍ଟ୍ରେଲିଆରେ କେବଳ ନୁହେଁ, ସବୁ ଦେଶର ଲୋକେ ହସିବାକୁ ଚାହାନ୍ତି ଓ ପ୍ରାଣଖୋଲା ହସୁଥିବା ମଣିଷ ବେଶିଦିନ ବଞ୍ଚେ ବୋଲି ଶରୀର ବିଶାରଦ-ମାନଙ୍କର ମତ । କୁକାବୁରାର ହସ କେତେ ପ୍ରକାର ଏବଂ କେତେବେଳେ କିଭଳି ଓ କେଉଁ ସ୍ୱରରେ ହସେ, ସେ ବିଷୟରେ ଜେମସ ହଟସନ ଏକ ସୁନ୍ଦର ଚଳଚ୍ଚିତ୍ର ଓ ରେକର୍ଡ଼ କରି ଖୁବ୍ ନାଁ କମେଇଛନ୍ତି । ଆମ ଦେଶର ପଶୁପକ୍ଷୀଙ୍କ ଉପରେ ଯେଉଁଭଳି ଶିଶୁ ସଙ୍ଗୀତ ଅଛି, ଅଷ୍ଟ୍ରେଲିଆରେ କୁକାବୁରାକୁ ନେଇ ସେହିଭଳି ଅନେକ ଶିଶୁ ସଙ୍ଗୀତ ଓ ଲୋକସଙ୍ଗୀତ ଅଛି । ଛୋଟ ପିଲାମାନେ ହସ ଖୁସିରେ ଖେଳିଲାବେଳେ ଗୀତ ବୋଲନ୍ତି "ଆସରେ ଆସ ହସ ହସାଅ...କୁକାବୁରା ପରି ପିଲାଏ ହୁଅ" । ୧୯୩୪ ମସିହାରେ କାଲିକା ବାଲ-

ଦେଶର ଜଣେ ସଙ୍ଗୀତ ଶିକ୍ଷକ କୁକାବୁରର ହସରେ ବିଭୋର ହୋଇ ମନ-ମତାଣିଆ ଗୀତଟିଏ ଲେଖିଥିଲେ । ଏବେ ପୃଥିବୀର ପ୍ରାୟ ଶହେଟି ଦେଶର ବାଳକର **ହୁସ···ହୁସୀ ସେହି** ଗୀତ ସହିତ ଖୁବ ପରିଚିତ ।

କୁକାବୁରର ହସିବା ସମୟ ଥାଏ ଓ କୁକାବୁରା ହସ କୁତୁକୁତୁ ହେଲେ ହସୁଥାଏ ଯେ ହସୁଥାଏ । ଅନ୍ୟ ଚଢ଼େଇଙ୍କ ତୁଳନାରେ ହସକୁରା କୁକାବୁରା ଯେମିତି ମାଗୋଗ ସେମିତି ସରସିଆ । କୁକାବୁରା ଗୋଟିଏ କଥା ଚେତାଇ ଦିଏ ଯେ ଖୁସିରେ ବେଶିଦିନ ବଞ୍ଚିବାକୁ ହେଲେ ନିୟମିତ ହସି ହସାଇବା ଦରକାର ।



# ଦରିଆ କଇଁଛ

କଇଁଛ ଏକ ସରୀସୃପ ଜାତୀୟ ପ୍ରାଣୀ । ଏହି 'କଚ୍ଛପ' ବା କଇଁଛ ସହ ଆମର ସମ୍ପର୍କ ଯେମିତି ପୁରୁଣା ସେଇମିତି ଧର୍ମ ଚେତନାରେ ଅଙ୍ଗୀକୃତ । ଜଗତର ନାଥ ଶ୍ରୀ ଶ୍ରୀ ଜଗନ୍ନାଥ ବା ଜଗଦୀଶ୍ୱରଙ୍କର ଦଶଅବତାର ମଧ୍ୟରୁ 'କଚ୍ଛପ' ଅବତାର ଅନ୍ୟତମ ।

କେବଳ ଓଡ଼ିଶାରେ ନୁହେଁ ଲକ୍ଷାଦ୍ୱୀପ, ଆଣ୍ଡାମାନ, ନିକୋବର ଦ୍ୱୀପପୁଞ୍ଜ । ଥାଇଲାଣ୍ଡ, ଶ୍ରୀଲଙ୍କା ସମେତ ଭାରତୀୟ ଉପମହାଦେଶର ପାକିସ୍ଥାନରୁ ବଙ୍ଗଳାଦେଶ ଉପକୂଳରେ ସାମୁଦ୍ରିକ କଇଁଛ ସାଧାରଣତଃ ଦେଖାଯାଆନ୍ତି । ଭାରତ ମହାସାଗର ବ୍ୟତୀତ ପ୍ରଶାନ୍ତ ମହାସାଗରର ଉପକୂଳରେ ମଧ୍ୟ ସମୁଦ୍ରକଇଁଛଙ୍କ ବସାଘର । କଇଁଛ ବା କଚ୍ଛପର ସୃଷ୍ଟି ସମ୍ପର୍କରେ ଶ୍ରୀଲଙ୍କାରେ ଏକ ସୁନ୍ଦର ପୌରାଣିକ ଆଖ୍ୟାୟିକା ଏବେବି ଭାରତୀୟ ବଂଶୋଦ୍ଭବ ତାମିଲ ଅଧିବାସୀ ଅଧ୍ୟୁଷିତ ଇଲାକାର ବଞ୍ଚିରହିଛି । ତାହା ହେଉଛି ଏହିଭଳି-ସକଳ ସୃଷ୍ଟି ଓ ଜୀବଜଗତରେ ସ୍ରଷ୍ଟା ବ୍ରହ୍ମା ଥରେ ସବୁ ଜୀବଜନ୍ତୁଙ୍କୁ ଏଇ ଭୋଜିକୁ ଡାକିଲେ—ସିଂହ, ଭାଲୁ, ବାଘ, ମାଙ୍କଡ଼ ଗରିଲାଠାରୁ ନାନା ଜାତିର ପଶୁପକ୍ଷୀଙ୍କ ଦଳପତି ଠିକଣା ସମୟରେ ଆସି ପହଞ୍ଚିଗଲେ, ହେଲେ କଇଁଛ ମାନଙ୍କର 'ଜେଜେମା ଡେରିରେ ପହଞ୍ଚିଲା । ସେତେବେଳକୁ ଭୋଜିଖିଆ ପିଆ ସରିବା ଉପରେ, କେହି କେହି ହାତମୁହଁ ଧୋଇ ପୁଣି ନିଜ ନିଜ ଘରକୁ ବାହୁଡ଼ିବାରେ ଉଦ୍ୟତ ।

ବ୍ରହ୍ମା ପଚାରିଲେ "ହେ କଇଁଛ, ତମର ଏତେ ଡେରି କାହିଁକି ହେଲା ?" ଦେବଦେବ ବ୍ରହ୍ମାଙ୍କର ଏ ଭୋଜିରେ ଡେରିରେ ପହଞ୍ଚିଥିବାରୁ ମୋତେ ଭଲ ଲାଗୁନାହିଁ—ହେଲେ ମୋର ଆଉ ଗୃହ କଅଣ ଥିଲା ? ସ୍ୱୟଂ ଦେବ ଦେବ ମୋ ଘରେ ଭଜେ କରିଥିଲେ—ଶୋଇଲା ସୌନ୍ଦର୍ଯ୍ୟର ସରାଗ ରାଇଜରେ ମୁଁ

ତାଙ୍କ କମିଆଁରେ ସବୁକଚ୍ଛ ଭୁଲି ଯାଇଥିଲି । ହେ ଦେବ ଦେବ ବ୍ରହ୍ମା ଆପଣତ ମୋତେ ଏଇମିତି ଘରଟିଏ ଦେଇଛନ୍ତି । ତା ଭିତରୁ ମୁଁ ସୁଖ ନିଦ୍ରାଯାଏ । ମୋ ସ୍ୱାମୀ ମତେ ଉଠେଇଦେଲେ, ନୋହିଲେ ମୁଁ ହୁଏତ ଏଭଳି ବିରାଟ ଭୋଜକୁ ନଆସି ରହିଯାଇଥାଆନ୍ତି ।" କଇଁଛ ଠାରୁ ଏକଥା ଶୁଣି ବ୍ରହ୍ମା କହିଲେ—କଣ କହୁଛୁ ତୋ ଅସନାଘର ଏତେ ସୁନ୍ଦର ଯେ ତୁ ମୋ ଭୋଜ ଏଡ଼ି ଶୋଇଯାଇଥିଲୁ ?



ବିଚ୍ଛୀ କଇଁଛ କହିଲା ହିଁ ପ୍ରଭୁ, ଯାହା ହେଉପଛେ ଘର ଠାରୁ ବଳି ସରଗ କଣଅଛି ଏ ଧରାରେ ? କଇଁଛ ମୁହଁରୁ ଏହା ଶୁଣି ବ୍ରହ୍ମାକହିଲେ ମୁଁ ଏତେ ଜୀବଜନ୍ତୁ ପଶୁପକ୍ଷୀଙ୍କୁ ସୃଷ୍ଟି କରିଛି—କାହିଁ ଆଉ କାହାରିତ ଘରପ୍ରତି ଏତେ ମମତା ନାହିଁ । କିଏ ଘର ଛାଡ଼ିଯୁଆଡ଼େ ଇଚ୍ଛା ସିଆଡ଼େ ଗଲାତଗଲା—ପୁଣି ନ ଫେରିଲା ଯାଏ ତାର ଘର ଠାଏଁ; ସେ ଠାଏଁ । ତୋତେ ଏହିବର ଦେଉଛି—ଆଜିଠୁଁ ତୁ ଯୁଆଡେ ଗଲେବି ମଧ୍ୟ ତୋଘର ସାଙ୍ଗରେ ଯାଉଥିବ । 'ସେଇ ଦିନଠୁ କଇଁଛ ତା ଖୋଳପାର ଘରଭିତରେ । ସିଏ ଯୁଆଡ଼େ ତାର ଭ୍ରାମ୍ୟମାଣ ଘର ମଧ୍ୟ ତା ସାଙ୍ଗରେ ଥାଏ । କଇଁଛର ଲୁଗୁଗୋଡ, ଆଗଗୋଡ ବଡ, ପଛ ଦୁଇଗୋଡ ସାନ । ଖୋଳପା ଯେଉଁଳି ସାଂଜୁ ତା' ଦେହର ।

ଏଇ କଇଁଛ ଏକ ସରୀସୃପ ଜାତୀୟ ଜୀବ ଏବଂ ଜଳ ଓ ସ୍ଥଳ ଉଭୟଚର । ମଧୁର ପାଣିରେ ଏବଂ ଲୁଣି ପାଣିରେ କଇଁଛ ରୁହନ୍ତି । ହେଲେ ମଧୁର ପାଣିଭରା ଜଳାଶୟ ନଈନାଳ, ପୋଖରୀ ହ୍ରଦ ଠାରୁ ମାଳଦରଆଁର କଇଁଛଙ୍କ ସଂଖ୍ୟା ଖୁବ୍‌ବେଶି । ଏମାନଙ୍କୁ ସାମୁଦ୍ରିକ କଇଁଛ କୁହନ୍ତି । ଆମଦେଶରେ ଏହି ସାମୁଦ୍ରିକ କଇଁଛ ପାଞ୍ଚ ଜାତିର । ଏମାନଙ୍କ ମଧ୍ୟରୁ ଗହୀର ମଥାନ କଇଁଛ ପୃଥିବୀର ସବୁଠାରୁ ଦଳବଦ୍ଧ କଇଁଛ ରୁପେ ଜଣା । ଅଥଚ ଫିକାହଳଦି ରଙ୍ଗର ଦେଖିବାକୁ ଆଉ କଇଁଛଙ୍କ ତୁଳନାରେ ସୁନ୍ଦର । ଏମାନେ ଖୁବ୍ ବିରଳ ଏବେ । ଏହି ହକ୍‌ସବିଲ ଜାତୀୟ କଇଁଛ ଶହ ଶହ ବର୍ଷ ଧରି ମଣିଷ ଶିକାରରେ ପ୍ରାଣ ହରାଉଛନ୍ତି । ଏମାନଙ୍କ ସୁନ୍ଦର ଖୋଳପା ଯୋଗୁଁ । ଭାରତ ଓ ପ୍ରଶାନ୍ତ ମହାସାଗରର ଉଷ୍ମପାଣିରେ ଏହି ହକ୍‌ସବିଲ କଇଁଛ ଖୁବ୍ ଉତ୍ତରମଣ୍ଡରିଆ କଇଁଛ ମାରି ତାକୁ ଫୁଟିଲା ପାଣିରେ ସିଝେଇ ତା ଖୋଳପା ଭିତର ମାଂସ କାଢ଼ିଦେଇ ଏହି କଇଁଛ ଖୋଳକୁ ବିକି କରନ୍ତି ଶିକାରୀମାନେ । ଦୁନିଆ ବଜାରରେ ଏହି ଖୋଳପାର ଭାଉ ଖୁବ୍ ଚଢ଼ା । ପ୍ଲାଷ୍ଟିକର ଉଦ୍‌ଭାବନ ଆଗରୁ ବହୁ ବର୍ଷଧରି ପାନିଆଁ, ଚଷମାଫ୍ରେମ ଓ ହାତପଂଖା ପାଇଁ ଏଇ କଇଁଛ ଖୋଳପା ଲାଗୁଥିଲା । ଏହାଛଡ଼ା କଇଁଛ ମାଉଁସ ସୁଆଦିଆ, ଅଣ୍ଡା ମଧ୍ୟ ପୁଷ୍ଟିକର । ଏଣୁ କଇଁଛ ଅଣ୍ଡା ଚୋରି ଓ କଇଁଛ ମରା ଏଯାଏ ଲୋପ ପାଇନି । କାଉ, ଗୋଧି, କଙ୍କଡ଼ା, ଇଗଲ, କୁକୁର, ସାର୍କ, କୁମ୍ଭୀର ସାମୁଦ୍ରିକ ଗଲ୍‌ସଙ୍କ ଦାଉସତ୍ତ୍ୱେ ଏ ଯାଏ ହକ୍‌ସବିଲ ବଞ୍ଚିରହିଛି ଏହାହିଁ ପ୍ରକୃତରେ ବିସ୍ମୟର ବିଷୟ । କଇଁଛର ଗତି ମନ୍ଥର, ଏଇଥିପାଇଁ ସାହିତ୍ୟରେ କଚ୍ଛପଗତିର ଉପମା ରହିଛି ମଧ୍ୟ ।

ଆମ ଦେଶରେ ବେଶି ଦେଖାଯାଉଥିବା ରିଡ୍‌ଲେ କଇଁଛ ଲକ୍ଷାଦ୍ୱୀପ ଆଣ୍ଡାମାନ, ନିକୋବର, ସଠ୍‌ମ, ହୁଇଲରର ଚେନ୍ନୁଲଆବାଲି ନଡ଼ିଆଚଢ଼ା ଉଡ଼ାବାଲି ଦ୍ୱୀପପୁଞ୍ଜ ଭଳି ଆମ ଓଡ଼ିଶାର ପାରାଦ୍ୱୀପ ନିକଟସ୍ଥ ବରୁଣେଇ ମୁହାଣ ଏବଂ ଭିତର କନିକାର ଗହୀରମଥା ପୃଥିବୀର ବୃହତ୍ତମ କଇଁଛଅଣ୍ଡା ଦେବାସ୍ଥଳୀ । ବଡ଼ 'ରିଡ୍‌ଲେ କଇଁଛ'ର ଆକାର ପ୍ରାୟ ନବେ ସେ: ମି: ଗୁଣିତକ ୪୫ ସେ: ମି: । ଓଜନ ପଚାଶଷାଠିଏ କେଜିରେ ସୀମିତ ଥାଏ ।